

୪ର୍ଥ ବର୍ଷ ● ଅଗଷ୍ଟ, ୧୯୫୪ ● ୧ମ ସଂଖ୍ୟା



# ସୂଚନା

ଶ୍ରୀ ବିଭୂତିଭୂଷଣ ପଟ୍ଟନାୟକ

ମାଟି ମରତର ସରଗର ଶସ୍ୟ ଯିଏ
ସରଜିଲା ଶ୍ରମ କରି,
ମୁଣ୍ଡ ଗୁଞ୍ଜିବାକୁ ପାଉନି ସେ ଟିକେ ଥାନ
ଖାଇବାକୁ ପେଟଭରି !

ପିଲାଛୁଆ ତାର ଗଡ଼ି ମରୁଛନ୍ତି ଭୋକେ
ନପାଇ ତୋରାଣି ଟୋପେ,
ଅତି ଦଇନ୍ୟରେ କାଟୁଅଛି ଯିଏ ଦିନ
ମନ ମାରିଦେଇ ଦୁଃଖେ !

ପର ତଣ୍ଟିକଟା ସ୍ୱେଚ୍ଛ ବଜାରିଆ ଯେତେ
ପ୍ରତାରକ, ଡାକୁଚୋର,
ହିମତଳ ପ୍ରାସାଦେ ହଂସତୂଳ ଶେଯେ ଶୋଇ
କାଟୁଛନ୍ତି ସୁଖେ କାଳ !

[illegible]ଙ୍କର ଯିଏ ସଞ୍ଚିପାରୁଛି ଧନ
ସମ୍ମାନିତ ସେ ବେଶୀ,
ସାଧୁ, ସନ୍ଥର ମାନ, ମର୍ଯ୍ୟାଦା ତେଣୁ
ତଳକୁ ପଡ଼ୁଛି ଖସି !

ହେବାର ନୁହେଁ ଯା ହେଉଅଛି ବୋଲି ଦେଖି
ବନ୍ଧୁ ! ପଡ଼ନା ଭାଜି,
କାନପାତି ଶୁଣ ଆଗାମୀର ପଦଧ୍ୱନି···
ଅଦୂରେ ଉଠୁଛି ବାଜି !

ସଳିତା ଯେପରି ଲିଭିଯିବାବେଳକୁ ଜଳେ
ଉଚ୍ଚକୁ ଟେକି ଶିଖା,
ଆଜିର ଏସବୁ ଅନ୍ୟାୟ, ଅବିଚାର
ଶେଷ ଥରପାଇଁ ସଖା !

ଏ ଅନ୍ଧାରେ ଥାଇ ଦେଖି ପାରୁଅଛି ମୁହିଁ
ପ୍ରଭାତୀ ସୂର୍ଯ୍ୟୋଦୟ
ଶ୍ରମ ବିଜୟର ପୂର୍ବ ସୂଚନା ଏହା
ହେଲାଣି ସର୍ବ ଶେଷ ।



# ପେଟ୍ରୋଲିୟମ୍ ଜେଲି ବା ଭେସ୍‌ଲିନ୍

ଶ୍ରୀ ସୁରେନ୍ଦ୍ର ମୋହନ ଦାସ, ବି. ଏସ୍‌ସି.

ବିଂଶ ଶତାବ୍ଦୀର ଯାନ୍ତ୍ରିକ ସଭ୍ୟତା ଯୁଗରେ ଭେସ୍‌ଲିନ ଏକ ସଦା ବ୍ୟବହୃତ ଓ ଅପରିହାର୍ଯ୍ୟ ପଦାର୍ଥରେ ପରିଣତ ହୋଇଅଛି । ଯେ କୌଣସି ଗୋଟିଏ ଦିନର କାର୍ଯ୍ୟାବଳୀ ପ୍ରତି ଆମ୍ଭେମାନେ ନଜର ଦେଲେ ଏହା ଅନ୍ତତଃ ବିଭିନ୍ନ ଦଶ ପ୍ରକାର ଉପାୟରେ ବ୍ୟବହୃତ ହେଉଥିବାର ଲକ୍ଷ୍ୟ କରି ପାରିବୁ । ସାଇକେଲ, ମଟରଠାରୁ ଆରମ୍ଭ କରି ସମସ୍ତ ପ୍ରକାର କଳ ଓ ଘୂର୍ଣ୍ଣାୟମାନ ଚକ, ପଙ୍ଖା ଇତ୍ୟାଦି ଏହି ବିଶେଷ ପଦାର୍ଥ ବିନା ଚଳତ୍‌ଶକ୍ତିହୀନ ହୋଇ କର୍କଶ ସ୍ୱରରେ ଆର୍ତ୍ତନାଦ କରିବା ପାଇଁ ଯେପରି ପ୍ରସ୍ତୁତ, ଅପର ପକ୍ଷରେ ଆମ୍ଭମାନଙ୍କର ସୁପରିଚିତ ଚିତ୍ରତାରକାମାନେ ଏହା ବିନା ଆଖିରୁ ଅଜସ୍ର ଅଶ୍ରୁଧାର ଛୁଟାଇ ଆମ୍ଭମାନଙ୍କର ଚିତ୍ତ ଚଞ୍ଚଳ କରିବାକୁ ମଧ୍ୟ ଅକ୍ଷମ । ଦୂର ସମୁଦ୍ର ସନ୍ତରଣ ସମୟରେ ଚର୍ମକୁ ଲୁଣି ଓ କଟୁ ପଦାର୍ଥଠାରୁ ରକ୍ଷାକରିବା ପାଇଁ ଯେପରି ଏହାକୁ ସମୁଦାୟ ଦେହରେ ବୋଳିବାକୁ ପଡ଼େ, ଲୁହା ତିଆରି ଯେ କୌଣସି ପଦାର୍ଥକୁ କଳଙ୍କି ଲାଗିବାରୁ ରକ୍ଷା କରିବା ପାଇଁ ମଧ୍ୟ ଏହା ସେହିପରି ପ୍ରୟୋଜନୀୟ । ସୈନ୍ୟବାହିନୀରେ କ୍ଷୌର କାର୍ଯ୍ୟପରେ ଚମକୁ ମସୃଣ ରଖିବା ପାଇଁ ଏବଂ ଅନ୍ଧ ବିଦ୍ୟାଳୟରେ ଅଙ୍ଗୁଳି ଟିପର ସ୍ନାୟୁକୁ ସତେଜ ରଖିବା ପାଇଁ ଏହା ବହୁଳଭାବରେ ବ୍ୟବହୃତ ହୁଏ । କେବଳ ଏତିକ ନୁହେଁ, ଆଜିକାଲି ପ୍ରାୟ ଏକହଜାର ବିଭିନ୍ନ ପ୍ରଣାଳୀରେ ଏହି ଭେସ୍‌ଲିନ୍ ବ୍ୟବହୃତ ହୋଇ ଆମ୍ଭମାନଙ୍କର ସୁଖ ସମୃଦ୍ଧି ବଢ଼ାଇବାରେ ସାହାଯ୍ୟ କରୁଅଛି । କିନ୍ତୁ ଆମ୍ଭେମାନେ କେବେ ଏହି ବିଶେଷ ପଦାର୍ଥ ଓ ତାହାର ଆବିଷ୍କାର ସମ୍ବନ୍ଧରେ ଚିନ୍ତା କରିବାକୁ ଏକ ମୁହୂର୍ତ୍ତ ସମୟ ଦେଇଛୁ କି ?

ଆଜକୁ ପ୍ରାୟ ଶହେବର୍ଷ ତଳର କଥା – ଜର୍ମାନୀ ଅନ୍ତର୍ଗତ ବ୍ରୁକ୍‌ଲିନ ସହରର "ରବର୍ଟ ଏ ଚେଜ୍‌ବ୍ରାଉ" (Robert A. Chesebrough) ନାମକ ବାଇଶବର୍ଷର ଏକ ରସାୟନବିତ୍ କ୍ୟାସେଲ ତେଲକୁ ଶୋଧିତ କରି ପାରାଫିନ୍ ନାମକ ମହମ ତିଆରି କରିବାରେ ପାରଦର୍ଶିତା ଲାଭ କରିଥିଲେ । ଏହି ସମୟରେ ସେ ପେନ୍‌ସିଲ୍‌ଭାନିଆର ବିସ୍ତୀର୍ଣ୍ଣ ତୈଳ-ସମ୍ପଦ ବିଷୟରେ କେତେ କଥା ଖବରକାଗଜରେ ପଢ଼ି ଉକ୍ତ ସ୍ଥାନ ପରିଦର୍ଶନ କରିବେ ବୋଲି ମନସ୍ଥ କଲେ । ୧୮୫୯ ମସିହାରେ ତାଙ୍କର ଯତ୍‌କିଞ୍ଚିତ୍ ସଞ୍ଚିତ ଧନ ବ୍ୟୟ କରି ସେହି ତେଲଖଣିରେ ପହଞ୍ଚି କେତେଗୁଡ଼ିଏ କୁଲି ତେଲ ପାଇପ୍‌ର ଭିତରପାଖକୁ ଲୁହା-ପାଢ଼ିଆ ଧରି ଘଷୁଥିବାର ଦେଖିଲେ । ଏମନ୍ତ କାର୍ଯ୍ୟର ତାତ୍ପର୍ଯ୍ୟ ବୁଝି ନପାରି ସେମାନଙ୍କୁ ପ୍ରଶ୍ନ କରିବାରୁ ସେମାନେ 'ପାଇପର ମହମ' ବା Rod Wax ଛଡ଼ାଇ ପରିଷ୍କାର କରୁଛନ୍ତି ବୋଲି ଉତ୍ତର ଦେଇଥିଲେ । 'ପାଇପର ମହମ' ପୁଣି କି ଜିନିଷ ବୋଲି ବିସ୍ମିତ ହୋଇ ଅନୁସନ୍ଧାନ କରି ବୁଝିଲେ ଯେ ପେଟ୍ରୋଲ ବୋହି ଯାଉଥିବା ପାଇପ୍ ଦେହରେ କାଣ୍ଟିପରି ଏକପ୍ରକାର ପଦାର୍ଥ ଜମିଯାଏ ଏବଂ ଏହାହିଁ ପାଇପ୍ ମହମ । ଏହାକୁ ସ୍ଥାନୀୟ ଲୋକମାନେ ଦେହରେ କୌଣସି ଆଘାତ ପାଇଲା ପରେ ବା କ୍ଷତ ହେଲା ପରେ ମଲମ ପରି ବ୍ୟବହାର କରି ଅତିଶୀଘ୍ର ଉପକାର ପାଉଥିବା କଥା ମଧ୍ୟ କହିଲେ । ଏହା ଶୁଣିବାମାତ୍ରେ 'ଚେଜ୍‌ବ୍ରାଉ'ଙ୍କ ମୁଣ୍ଡରେ ବିଦ୍ୟୁତ୍ ବେଗରେ ଏକ ନୂତନ ଚିନ୍ତା ଖେଳିଗଲା । ପେଟ୍ରୋଲ ଉପଯୁକ୍ତ ପ୍ରକାରେ ପରିଷ୍କୃତ ହୋଇପାରୁ ନଥିବାରୁ ଏପରି ହେଉଥିବାର ଅନୁମାନ କରି ଏବଂ ପେଟ୍ରୋଲ ଦେହରୁ ପାରାଫିନ୍ ୱ୍ୟାକ୍‌ସ ତିଆରି କରାଯାଇପାରେ ବୋଲି ସନ୍ଦେହ କରି ଚେଜ୍‌ବ୍ରାଉ ସାଙ୍ଗରେ କିଛି "ପାଇପ୍ ମହମ" ଧରି ବ୍ରୁକ୍‌ଲିନ୍ ଫେରିଲେ ।

ସେଠାରେ ସେ ପରୀକ୍ଷା କରି ଦେଖିଲେ ଯେ ପେଟ୍ରୋଲିୟମ୍ ବିଶୋଧନ ସମୟରେ ଏକ ଘନ ସ୍ୱଚ୍ଛ ପଦାର୍ଥ ଅବଶିଷ୍ଟ ରହୁଅଛି ଏବଂ ଏହାହିଁ ପାଇପ ମହମ ଏବଂ ବିଶୋଧନର ତ୍ରୁଟି ହେତୁ ଏହା ପାଇପ୍ ମଧ୍ୟରେ କାଣ୍ଟି ଆକାରରେ ଜମି ଯାଉଥିଲା । ସାମାନ୍ୟ ଚେଷ୍ଟାରେ ପେଟ୍ରୋଲ ଏହା ଦେହରୁ ଅଲଗା କରାଯାଇପାରେ । ପେଟ୍ରୋଲିୟମ୍‌ରୁ ଜାତ ଏହି ଜେଲି ଜାତୀୟ ପଦାର୍ଥକୁ ସେ କୌତୁହଳବଶତଃ "ଭେସ୍‌ଲିନ୍" ବୋଲି ଗୋଟିଏ ନୂତନ ନାମ ଦେଲେ । ଜର୍ମାନୀ ଭାଷାରେ ଭେସ୍‌ଲିନର ଅର୍ଥ ପାଣି ଓ ଅଲିଭ୍ ଅଏଲର ସମ୍ମିଶ୍ରଣରେ ତିଆରି କୌଣସି ପଦାର୍ଥ । କିନ୍ତୁ ପ୍ରକୃତ ପକ୍ଷରେ ଏହା ପରିଷ୍କୃତ ପେଟ୍ରୋଲିୟମ୍ ଜେଲି ।

ଏହି ଭେସ୍‌ଲିନର କୌଣସି ପ୍ରକାର ଆରୋଗ୍ୟକାରୀ ଶକ୍ତି ଅଛି କି ନାହିଁ ତାହା ପରୀକ୍ଷା କରିବାପାଇଁ ସେ ନିଜ ହାତର ଅଙ୍ଗୁଳିକୁ ହାତୁଡ଼ିରେ ଛେଚି, ବ୍ଲେଡ୍‌ରେ କାଟି ଓ ନିଆଁରେ ପୋଡ଼ି ଏହି ଭେସ୍‌ଲିନ୍ ପ୍ରୟୋଗ କରି ଅତ୍ୟାଶ୍ଚର୍ଯ୍ୟ

ଫଳ ପାଇଲେ । ତେଣୁ ସେ ଆହୁରି ଅଧିକ ପରିମାଣରେ ଓ ଖୁବ୍ ବିଶୁଦ୍ଧ ଭାବରେ ଏହି ଭେସ୍‌ଲିନ୍ ତିଆରି କରିବା ଡବା-ମାନଙ୍କରେ ପୂରାଇ ନମୁନା ସ୍ୱରୂପ ଔଷଧ ଦୋକାନ, ଡାକ୍ତର ଓ ଦେଶର ଅନ୍ୟାନ୍ୟ ଅଞ୍ଚଳରେ ବାଣ୍ଟିଲେ । ଫଳରେ ଏହି ପେଟ୍ରୋଲିୟମ୍ ଜେଲି ତାହାର ନୂତନ ନାମ "ଭେସ୍-ଲିନ୍"ରେ ଦେଶର ପ୍ରତି କୋଣରେ ପରିଚିତ ହେବାକୁ ଲାଗିଲା । ଭେସ୍‌ଲିନ୍‌ର ଏହି ପ୍ରଥମ ନମୁନା ବାଣ୍ଟିବା କାର୍ଯ୍ୟରେ ସେ ବାରଟି ଘୋଡ଼ା ଓ ଦୁଇଟି ବଡ଼ ବଡ଼ ଘୋଡ଼ା-ଗାଡ଼ି ଲଗାଇ ଥିଲେ । କ୍ରମେ ଏହି ଭେସ୍‌ଲିନ୍ ଜନ ସାଧାରଣଙ୍କ ମଧ୍ୟରେ ଏପରି ସମାଦୃତ ହେବାକୁ ଲାଗିଲା ଯେ ଦିନକୁ ହାରାହାରି ୧୪୫୦ ଟିଣ ଅର୍ଥାତ୍ ପ୍ରତି ମିନିଟରେ ଏକ ଟିଣ କରି ବିକି ହେବାକୁ ଲାଗିଲା ।

୧୯୧୨ ମସିହା ଜାନୁୟାରୀ ମାସରେ ନ୍ୟୁୟର୍କର ଏକ ଜୀବନବୀମା କମ୍ପାନୀର କୋଠାରେ ଭୀଷଣ ଅଗ୍ନିକାଣ୍ଡ ଘଟି ବହୁ କର୍ମଚାରୀ ଅଗ୍ନିଦଗ୍ଧ ହେଲେ । ସେମାନଙ୍କ ଦେହର ପୋଡ଼ା ଘା ପାଇଁ ଟନ୍ ଟନ୍ "ଭେସ୍‌ଲିନ୍" କଟାଗଲା । ଫଳତଃ ପକ୍ଷରେ ଭେସ୍‌ଲିନ୍ ବ୍ୟବସାୟରେ ଏହା ଏକ ସ୍ମରଣୀୟ ଦିବସ । ଏହାପରେ ଜନସାଧାରଣଙ୍କ ମଧ୍ୟରେ ଏହାର ଅଧିକ ସମାଦର ହେଲା ଓ ଦିନକୁଦିନ ଏହାର ନୂଆ ବ୍ୟବହାର ସମ୍ପର୍କରେ ଖବର ଚିଜବ୍ରୋଙ୍କଠାରେ ପହଞ୍ଚିଲା । ବିଶୁଦ୍ଧ ଭେସ୍‌ଲିନ ଆଜିକାଲି ନାନାପ୍ରକାର ଔଷଧ ତିଆରିରେ ବ୍ୟବହୃତ ହେଉଅଛି । ଏହାର ନିଜର ସେପରି କିଛି ଉଗ୍ର ଭେଷଜ ଗୁଣ ନ ଥିବାରୁ ଅନ୍ୟାନ୍ୟ ଔଷଧର ବାହକରୂପେ ଏହା ପ୍ରାୟ ସମସ୍ତପ୍ରକାର ମଲମ ଓ ବାହ୍ୟ ପ୍ରୟୋଗ ଔଷଧ ତିଆରିରେ ବ୍ୟବହୃତ ହୁଏ । ଫଟୋଗ୍ରାଫିକ୍ ଫିଲ୍ମ ତିଆରି, ଲୁବ୍ରିକେସନ୍ ଓ କଳକୁ କଳଙ୍କି ଲାଗିଥିବାରୁ ରକ୍ଷା କରିବା ପାଇଁ ମୁଖ୍ୟତଃ ଏହା ବହୁଳଭାବରେ ଦରକାର ହୁଏ । ଅତି ଉଚ୍ଚ ବା ଅତି ନିମ୍ନ ତାପରେ ଏହାର କୌଣସି ପରିବର୍ତ୍ତନ ନ ହେଉଥିବାରୁ ବୈଜ୍ଞାନିକ ଗବେଷଣାମାନଙ୍କର ସାହାଯ୍ୟ କରିବା ଦିଗରେ ଏହାର କ୍ଷେତ୍ର ମଧ୍ୟ ପ୍ରଶସ୍ତ । ସମୁଦ୍ର ବୁଡ଼ାଳୀ ଓ ମୁକ୍ତା ସଂଗ୍ରହକାରୀମାନେ ସମସ୍ତ ଦେହରେ ଏହାକୁ ବୋଳନ୍ତି । କମାଣ୍ଡର ପିଅରୀ ତାଙ୍କର ମେରୁ ଆବିଷ୍କାର ପାଇଁ କରିଥିବା ସମସ୍ତ ଅଭିଯାନରେ "ଭେସ୍‌ଲିନ୍"କୁ ଦେହରେ ବୋଳି ହିମାଙ୍କଠାରୁ ୪୦° କମ୍ ତାପରେ (—40°c) ଶରୀରର ଉତ୍ତାପ ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ପର୍ବତଶୃଙ୍ଗ ଆରୋହୀମାନେ ମଧ୍ୟ ଏହାକୁ ତଦନୁରୂପ ବ୍ୟବହାର କରନ୍ତି । ଦକ୍ଷିଣ ଆଫ୍ରିକାର ଘନ ଜଙ୍ଗଲ ଅଞ୍ଚଳରେ କେତେକ ଅଧିବାସୀ ଭେସ୍‌ଲିନ୍ ଟିଣକୁ ମୁଦ୍ରା ପରି ବିନିମୟ କରୁଥିବାର ଖବର ମଧ୍ୟ ମିଳିଛି ।

ଗୋଟିଏ ମଜାର କଥା—ଥରେ ଚିଜବ୍ରୋଙ୍କୁ ତାଙ୍କର ଜଣେ କର୍ମଚାରୀ ଖବର ଦେଲେ—"ମହାଶୟ, ଭାରତ-ବର୍ଷରେ କେତେକ ଲୋକ ଆମର ଏହି ଭେସ୍‌ଲିନ୍‌କୁ ମାଖନ ପରିବର୍ତ୍ତରେ ରୁଟିରେ ବ୍ୟବହାର କରି ଖାଉ-ଥିବାର ଖବର ମୁଁ ବର୍ତ୍ତମାନ ପାଇଲି ।" ଏଥିରେ ସେ ଉତ୍ତ୍ୟକ୍ତ ହୋଇ ଉତ୍ତରଦେଲେ "ଆହେ ନିର୍ବୋଧ, ତୁମେ କ'ଣ ଏହା ଏତେଦିନ ଧରି ଜାଣି ନ ଥିଲ ? ମୁଁ ପରା ଏହି ଭେସଲିନ୍‌ରୁ ଏକ ଚାମୁଚ କରି ଗତ କେତେ ବର୍ଷ ହେଲା ପ୍ରତ୍ୟହ ଖାଇ ଆସୁଅଛି ଏବଂ ମୋର ଦୃଢ଼ ବିଶ୍ୱାସ ଏହା ମୋତେ ସବୁ ପ୍ରକାର ରୋଗରୁ ରକ୍ଷା କରି ପାରିଛି ।" ଏହାର କିଛି ଦିନ ପରେ ସେ ତାଙ୍କ ଜୀବନର ୬୦ ବର୍ଷର ଉପକଣ୍ଠରେ ହଠାତ୍ ପ୍ଲୁରେସି ନାମକ କଠିନ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ । ତାଙ୍କ ପାଇଁ ଉପଯୁକ୍ତ ଚିକିତ୍ସାର ବ୍ୟବସ୍ଥା କରାଗଲା, ମାତ୍ର ଚିଜବ୍ରୋ ସେଥିରେ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ଅନୁମୋଦିତ ଚିକିତ୍ସା ପ୍ରଣାଳୀ ସହିତ ଆନୁସଙ୍ଗିକ ଭାବରେ ସମସ୍ତ ଦେହରେ ତାଙ୍କ ଆବିଷ୍କୃତ 'ଭେସଲିନ୍' ମାଲିସ କରାଗଲେ ସେ ଯେ ଶୀଘ୍ର ଆରୋଗ୍ୟ ଲାଭ କରିବେ ଏହା ଦୃଢ଼ ଭାବରେ ପ୍ରକାଶ କଲେ । ଫଳରେ ତାହାହିଁ କରାଗଲା ଓ ସେ ଅଚିରେ ଆରୋଗ୍ୟ ଲାଭ କଲେ !!.........୧୯୩୩ ମସିହାରେ ୯୬ ବର୍ଷ ବୟସରେ ଚିଜବ୍ରୋ ଶେଷ ନିଃଶ୍ୱାସ ତ୍ୟାଗ-କଲେ । ମୃତ୍ୟୁ ପୂର୍ବରୁ ନିରୋଗ ଓ ଦୀର୍ଘ ଜୀବନ ପାଇଁ ସେ ଖାଉଥିବା ଭେସଲିନ୍ ଯେ ଦାୟୀ ତାହା ଗର୍ବର ସହିତ ଘୋଷଣା କରି ପାଇଥିଲେ । ଧନ୍ୟ 'ଭେସଲିନ୍' ଏବଂ ତାହାର ଆବିଷ୍କାରକ ଓ ଗୁଣମୁଗ୍ଧ 'ଚିଜବ୍ରୋ' !!!

ବର୍ତ୍ତମାନ "ଚିଜବ୍ରୋ ମ୍ୟାନୁଫ୍ୟାକଚରିଂ କମ୍ପାନୀ" ଏହି ବିରଳ ପଦାର୍ଥଟି ତିଆରି କରି ପୃଥିବୀର ବିଭିନ୍ନ ଶହେଟି ଦେଶରେ ପରିବେଷଣ କରୁଛନ୍ତି ଏବଂ ବାର୍ଷିକ ହାରାହାରି ୬୯ ଲକ୍ଷ ଟିଣ ବିକ୍ରୟ କରୁଛନ୍ତି ।

## ଦରକାରବେଳେ କର୍ମରେ ଆସିବ

ଗତ ଜୁଲାଇ ୮ ତାରିଖରେ ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ନେହେରୁଙ୍କ ଦ୍ୱାରା ଭକ୍ରା ନାଙ୍ଗଲ କେନାଲ ଉଦ୍‌ଘାଟିତ ହେଲା । ସେ ଗୋଟିଏ ବୋତାମ ଟିପି କେନାଲର ଦ୍ୱାର ଖୋଲି ଦେବା ଦ୍ୱାରା ଜଳ କେନାଲ ମଧ୍ୟରେ ପ୍ରବେଶ କଲା । ଏହି କେନାଲ ପୃଥିବୀର ଦୀର୍ଘତମ କେନାଲ ଅଟେ । ଏହି କେନାଲଗୁଡ଼ିକ ୩ ହଜାର ମାଇଲରୁ ଅଧିକ ଦୀର୍ଘ ଓ ଏ ଗୁଡ଼ିକ ଦ୍ୱାରା କୋଟିଏ ଏକର ଜମିରେ ଜଳସେଚନ କରାଯାଇପାରିବ ।

ଯୋଜନା ସମ୍ବନ୍ଧରେ କେତେକ ପ୍ରଧାନ କଥା

(୧) ଭକ୍ରା ବନ୍ଧ ପୃଥିବୀର ଦ୍ୱିତୀୟ ଉଚ୍ଚତମ ବନ୍ଧ ।

(୨) ଏହି ନଦୀବନ୍ଧ ଯୋଜନାରେ ଲାଗିଥିବା ପଥର ଓ କଂକ୍ରିଟର ପରିମାଣ ୫୦ କୋଟି ଘନଫୁଟ ଅଟେ ଏବଂ ଏହାର ପରିମାଣ ଇଜିପ୍ଟର ୨ଟି ବୃହତ୍ତମ ପିରାମିଡ୍‌ରେ ଲାଗିଥିବା ପଥରର ୩ ଗୁଣରୁ ଅଧିକ ଘନଫୁଟ ଅଟେ ।

(୩) ଏହି କେନାଲମାନଙ୍କରେ ବ୍ୟବହୃତ ହୋଇଥିବା ଟାଇଲର ସଂଖ୍ୟା ୨୫ କୋଟି ଏବଂ ପଥର କାମପାଇଁ ବ୍ୟବହୃତ ଇଟାର ପରିମାଣ ୨୮ କୋଟି । ଯଦି ଏହି ଇଟା ଓ ଟାଇଲଗୁଡ଼ିକର ପ୍ରତ୍ୟେକ ଯୋଗକରି ରଖି ଦିଆଯାଏ, ତେବେ ଏହା ବିଷୁବରେଖାଠାରେ ପୃଥିବୀକୁ ୭ ଥର ବୁଲି ପାରିବ ।

(୪) ଯଦି ଏକା ଦିନକେ ଏହାକୁ ସମ୍ପୂର୍ଣ୍ଣ କରିବା ଆବଶ୍ୟକ ପଡ଼ିଥାନ୍ତା, ତେବେ ୨ କୋଟି ଲୋକ ଦରକାର ହୋଇଥାନ୍ତେ ।

(୫) ଏଥିରେ ଯେଉଁ ମାଟିକାମ ହୋଇଛି ତାର ପରିମାଣ ୩୪୦ କୋଟି ଘନଫୁଟ । ଏହି ମାଟି ଦ୍ୱାରା ୩ଫୁଟ ଉଚ୍ଚ ଓ ୨୦ ଫୁଟ ଚଉଡ଼ାର ଗୋଟିଏ ରାସ୍ତା ଦିଲ୍ଲୀଠାରୁ ନ୍ୟୁୟର୍କ ପର୍ଯ୍ୟନ୍ତ ଅର୍ଥାତ୍ ୯ ହଜାର ୨ ଶହ ମାଇଲ ହୋଇପାରିବ ।

(୬) ଭକ୍ରା-ନାଙ୍ଗଲ କେନାଲର ଭିତରପଟ ପଲସ୍ତରା ହେବାପାଇଁ ଯେଉଁ ଚୂନ ମସଲା ବ୍ୟବହୃତ ହୋଇଛି, ତଦ୍ଦ୍ୱାରା ୬ ଇଞ୍ଚ ମୋଟା ୯ ବର୍ଗମାଇଲ ଗୋଟିଏ ଚଟାଣ ତିଆରି କରାଯାଇପାରିବ ।

(୭) ଏକ ମାଇଲ ବନ୍ଧ କରିବାପାଇଁ ଅଫିସର ଏବଂ କର୍ମଚାରୀମାନଙ୍କୁ ୨୫୦୦ ମାଇଲ ବୁଲିବାକୁ ପଡ଼ିଛି ।

## ବୁଦ୍ଧି ପରୀକ୍ଷା

[ତୁମ ବୁଦ୍ଧିର ପ୍ରଖରତା ପରୀକ୍ଷା କରିବା ପାଇଁ ତଳେ କେତେଗୋଟି ପ୍ରଶ୍ନ ଦିଆଯାଇଛି । ସାଧାରଣ ବୁଦ୍ଧି-ସମ୍ପନ୍ନ ଲୋକ ସେଗୁଡ଼ିକ ୧୦ ମିନିଟ ଭିତରେ ଉତ୍ତର କରିବାର କଥା । ଚେଷ୍ଟା କରି ଦେଖ ।]

୧ । କେଉଁ ଉତ୍ତରଟି ଠିକ୍ ?—

(କ) ପାଟି ଓ ଜିଭର ମାଂସପେଶୀଗୁଡ଼ିକ ଠିକ୍ ରୂପେ କାମ ନ କଲେ ମନୁଷ୍ୟ

(୧) ମୂକ ହୁଏ ।

(୨) ଛନା ହୁଏ ।

(୩) ଗମୁଡ଼ ହୁଏ ।

(ଖ) ଶିକ୍ଷକମାନେ ସନ୍ତୁଷ୍ଟ ରହିବା ଉଚିତ, ଯେହେତୁ

୧) ସେମାନେ ଏକ ମହତ୍ତ୍ୱ କର୍ତ୍ତବ୍ୟ କରୁଛନ୍ତି,

୨) ସେମାନଙ୍କୁ ଆଉ ଅଧିକ ଦରମା ମିଳିପାରୁନାହିଁ,

୩) ଭଲ କାମ କଲେ ବେଶୀ ଟଙ୍କା ମିଳେ ନାହିଁ ।

୨ । ଗୋଟିଏ ଅନ୍ଧାର ଘରେ ଗୋଟିଏ ଟର୍ଚ୍ଚ, ଗୋଟିଏ ମହମବତୀ, ଗୋଟିଏ ଲଣ୍ଠନ ଓ ଗୋଟିଏ ଲ୍ୟାମ୍ପ ଥିଲା । ଜଣେ ଲୋକ ଗୋଟିଏ ଦିଆସିଲିମୁଠା ଧରି ସେ ଘରକୁ ଗଲା । ପ୍ରଥମେ ସେ କାହାକୁ ଲଗାଇବ ?

୩ । କବି ରବୀନ୍ଦ୍ରନାଥ ତାଙ୍କ ବୃଦ୍ଧାବସ୍ଥାରେ କେଉଁ ଖୁରରେ ଖିଅର ହେଉଥିଲେ ?

୪ । ସାତବର୍ଷତଳେ ରାମ, ହରି ଓ ଗୋପାଳର ବୟସ ମିଶି ୧୫ ବର୍ଷ ଥିଲା । ପାଞ୍ଚବର୍ଷପରେ ସେମାନଙ୍କର ମୋଟ ବୟସ କେତେ ହେବ ?

୫ । ୨୧୨୮ ଗୋଟିଏ ସଂଖ୍ୟା ଅଛି । ୨୧ ଏବଂ ୨୮ ଏହି ଅଙ୍କ ମଧ୍ୟରେ ଯେତେ ଇଚ୍ଛା ସେତେଟି ୯ ରଖ ଏବଂ ତାହାକୁ ୪ ରେ ଗୁଣ । ଗୁଣଫଳରେ କି ବିଶେଷତ୍ୱ ଦେଖିଲ ?

( ଉତ୍ତର ୨୫ ପୃଷ୍ଠାରେ ଦେଖ )

(୮) ଏଠାରେ ୧୦ଟି ବିଦ୍ୟୁତ୍ ସଂଗ୍ରହ ଯନ୍ତ୍ରଦ୍ୱାରା ପାୱାର ହାଉସ୍‌ରେ ୯୦ ହଜାର କିଲୋୱାଟ୍ ବିଦ୍ୟୁତ୍‌ଶକ୍ତି ସଂଗୃହୀତ ହୁଏ । ଏହି କେନ୍ଦ୍ରଟି ଭାରତ ତଥା ଏସିଆରେ ବୃହତ୍ତମ । ୨୨୦ ହଜାର ଭୋଲ୍ଟ ବହନକାରୀ ଲାଇନ ଭାରତରେ ଏହା ପ୍ରଥମ ।

—○—



**ପୂଜାରଣୀ**

କାଠଖୋଦାଇ　　ଶିଳ୍ପୀ ଶ୍ରୀ ଉଦୟ ନାରାୟଣ ଜେନା

# ବିପ୍ଳବୀ ଜୟପ୍ରକାଶ

ଶ୍ରୀ ବିଭୂତି ଭୂଷଣ ପଟ୍ଟନାୟକ

ଗତ କିଛିଦିନ ତଳେ 'ଭୂମିଦାନ' ସହିତ 'ଅମୃଦାନ' ଆନ୍ଦୋଳନ ଆରମ୍ଭ କରି ଯେଉଁ ମହାନ୍ ବିପ୍ଳବୀ ସାରା ଭାରତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ, ସେ ହେଉଛନ୍ତି ଭାରତର ଅପ୍ରତିଦ୍ୱନ୍ଦ୍ୱୀ ସାମ୍ୟବାଦୀ ନେତା ଜୟପ୍ରକାଶ ନାରାୟଣ । ୧୯୦୨ ମସିହା ଅକ୍ଟୋବର ୨୧ ତାରିଖରେ ବିହାର ପ୍ରଦେଶସ୍ଥ ସାରଣ ଜିଲ୍ଲାର ସିତାବ୍-ଦିୟାରା ଗାଁରେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ହରସୁରଦୟାଲ୍ ନାରାୟଣଙ୍କ ଜ୍ୟେଷ୍ଠପୁତ୍ର ରୂପେ ସେ ଜନ୍ମଗ୍ରହଣ କରିଥିଲେ ।

କିଶୋର ଅବସ୍ଥାରୁ ଜଣେ ମେଧାବୀ ଛାତ୍ରରୂପେ ସେ ନିଜ ଗ୍ରାମ ପାଠଶାଳୀରୁ ବିଦ୍ୟାରମ୍ଭ କରି ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ସମାଜ ଶାସ୍ତ୍ରରେ ଏମ୍.ଏ. ପାଶ୍ କରିବା ସଙ୍ଗେ ସଙ୍ଗେ ଗଣିତ, ଇତିହାସ, ଅର୍ଥଶାସ୍ତ୍ର ଇତ୍ୟାଦିରେ ଅସାଧାରଣ ବ୍ୟୁତ୍ପତ୍ତି ହାସଲ କରିଥିଲେ । ଆମେରିକାରେ ପାଠ ପଢିବା ପାଇଁ ଗରିବ ଜୟପ୍ରକାଶଙ୍କୁ ଫଳ ବଗିଚାରେ କାମ କରିବାଠୁଁ ଆରମ୍ଭ କରି ପାଇଖାନା ସଫାକରିବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ କରିବାକୁ ପଡ଼ୁଥିଲା । ଆମେରିକାରେ ପଢ଼ୁଥିବା ବେଳେ ମାର୍କସୀୟ ଶାସ୍ତ୍ର ଅଧ୍ୟୟନ କରି ସେ ମଧ୍ୟ ଜଣେ କମ୍ୟୁନିଷ୍ଟ ହୋଇ ଯାଇଥିଲେ । କିନ୍ତୁ ୧୯୨୯ ଖ୍ରୀଷ୍ଟାବ୍ଦରେ ଭାରତକୁ ଫେରି ସେ ଜଣେ ପକ୍କା ସାମ୍ୟବାଦୀ [Socialist] ପାଲଟିଗଲେ ଏବଂ ଭାରତ ସ୍ୱାଧୀନତା ଆନ୍ଦୋଳନରେ ଜଣେ ଆଗୁଆ ସେନାପତି ରୂପେ ଗାନ୍ଧିଜୀଙ୍କ ନେତୃତ୍ୱରେ କାର୍ଯ୍ୟ କରିଥିଲେ ।

ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନ କରୁଥିବା ହେତୁ ତାଙ୍କୁ ବହୁ ସମୟରେ କାରାଦଣ୍ଡ ବରଣ କରିବାକୁ ପଡ଼ୁଥିଲା ଏବଂ ଶୀତ ରାତିରେ ନିର୍ଜନ କାରାଗାରରେ ବରଫ ଉପରେ ଠିଆ ହୋଇ ରହିବାକୁ ହେଉଥିଲା । କାମୁଡ଼ା ବିଲୁଆ ଭଳି ଇଂରେଜ ସରକାର ତାଙ୍କୁ ଧରାଇ ଦେବାପାଇଁ ହଜାର ହଜାର ଟଙ୍କା ମଧ୍ୟ ଘୋଷଣା କରୁଥିଲେ । ତଥାପି ଗାନ୍ଧିଜୀ ଇତ୍ୟାଦି ଜେଲରେ ଥିଲାବେଳେ ଅବିଚଳିତ ଭାବରେ ସେ କଂଗ୍ରେସର ସାଧାରଣ ସମ୍ପାଦକ କାମଠାରୁ ଲୁଚି ଛପି ଜଣେ ବିପ୍ଳବୀ ନେତା ହିସାବରେ ଭାରତୀୟ ଜନତାକୁ ନେତୃତ୍ୱ ଦେଉଥିଲେ ।

ଜାତୀୟ କଂଗ୍ରେସରେ ଥିଲାବେଳେ, ସ୍ୱାଧୀନତା ପରେ ଦେଶରେ ଏକ ସୁଖୀ ସାମ୍ୟବାଦୀ ସମାଜ ଗଠନ କରିବାର ମଧୁର ସ୍ୱପ୍ନ ସେ ଦେଖୁଥିଲେ । ସେଥିପାଇଁ ନାସିକ ଜେଲରେ ଥିଲା ବେଳେ କଂଗ୍ରେସ ଦଳ ଭିତରେ ସେ କଂଗ୍ରେସ-ସୋସାଲିଷ୍ଟ ପାର୍ଟି ନାମରେ ଏକ ଦଳ ଗଢ଼ିଥିଲେ । ପରବର୍ତ୍ତୀ କାଳରେ ଏହା ସୋସାଲିଷ୍ଟ ପାର୍ଟି ଏବଂ ବର୍ତ୍ତମାନ ତାହା ପ୍ରଜା-ସୋସାଲିଷ୍ଟ ପାର୍ଟି ନାମରେ କାର୍ଯ୍ୟ କରୁଛି ।

ସାମ୍ୟବାଦୀ ଦଳ ଭିତରେ ଥିଲାବେଳେ ଜୟପ୍ରକାଶଜୀ ନିଖିଳ ଭାରତ ରେଲବାଇ ଫେଡ଼େରେସନ ଓ ଡାକତାର ବିଭାଗ କର୍ମଚାରୀ ସଂଘ ଇତ୍ୟାଦିର ସଭାପତି ଥାଇ ଜଣେ ଶ୍ରମିକ ନେତା ରୂପେ ମଧ୍ୟ ଖ୍ୟାତିଲାଭ କରିଥିଲେ । ବର୍ତ୍ତମାନ ବିନୋବାଙ୍କ ଭୂମିଦାନ ଯଜ୍ଞର ପ୍ରଧାନ ଅଗ୍ରଣୀ ରୂପେ ସେ କାର୍ଯ୍ୟ କରୁଛନ୍ତି ।

କିଛି ଦିନ ତଳେ ସୋସାଲିଷ୍ଟ ପାର୍ଟି ଭିତରେ ଜୟପ୍ରକାଶଙ୍କୁ ଯେଉଁମାନେ ଜଣେ ଖାଣ୍ଟି ମାର୍କସବାଦୀ ରୂପେ ଦେଖୁଥିଲେ, ସେମାନେ ଆଜି ତାଙ୍କର ବସ୍ତୁବାଦ ଉପରୁ ଆସ୍ଥା ତୁଟି ଯାଇଥିବା ଦେଖି ବିସ୍ମିତ ହୁଅନ୍ତି । କିନ୍ତୁ ଯେଉଁମାନେ ତାଙ୍କ ଅତୀତର କାର୍ଯ୍ୟକଳାପକୁ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କରି ଦେଖିବେ, ସେମାନେ ସ୍ପଷ୍ଟ ଦେଖିବାକୁ ପାଇବେ ଯେ ଗାନ୍ଧିଜୀଙ୍କ ପ୍ରଭାବ ତାଙ୍କୁ ସବୁବେଳେ ପ୍ରଭାବିତ କରିଛି ଏବଂ ଏହାହିଁ ତାର ଉଜ୍ଜ୍ୱଳ ସୂଚନା ।

ଜୟପ୍ରକାଶ କେବଳ ଜଣେ ପ୍ରଖ୍ୟାତନାମା ଦେଶ-ସେବକ ନୁହନ୍ତି, ସେ ଜଣେ ବିଚକ୍ଷଣ ରାଜ-ନୀତିଜ୍ଞ ମଧ୍ୟ । ମହାଭାରତୀୟ ରାଜନୀତିରେ ବର୍ତ୍ତମାନ ଅଂଶ ଗ୍ରହଣ କରୁଥିବା ନେତୃମଣ୍ଡଳୀରେ ପଣ୍ଡିତ ଜବାହାରଲାଲଙ୍କ ପରେ ତାଙ୍କ ସ୍ଥାନ ସୁନିର୍ଦ୍ଦିଷ୍ଟ ବୋଲି ତାଙ୍କ ରାଜନୈତିକ ବିରୋଧୀ ଶତ୍ରୁମାନେ ମଧ୍ୟ ସ୍ୱୀକାର କରିବାକୁ ପ୍ରସ୍ତୁତ । ଜବାହାରଲାଲ ଓ ତାଙ୍କ ଭିତରେ ପାର୍ଥକ୍ୟ ଏତିକି ଯେ, ଜବାହାରଲାଲ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ମଧ୍ୟରେ ଲାଳିତ ପାଳିତ ହୋଇ ବାପାଙ୍କ ଅଜସ୍ର ଅର୍ଥବ୍ୟୟରେ ଉଚ୍ଚଶିକ୍ଷା ଲାଭକରି ରାଜନୀତିରେ ପ୍ରତିଷ୍ଠା ଲାଭ କରିଥିବା ବେଳେ, ଜୟପ୍ରକାଶ ଅଭାବ, ଅନାଟନର ଆର୍ତ୍ତ ହାହାକାର ଭିତରେ ନିଜ ଶକ୍ତିରେ ନିଜେ ମାଟି ତାଡ଼ି ତାଙ୍କର ଉପଯୁକ୍ତ ସ୍ଥାନ ବାଛି ନେଇଛନ୍ତି ।

—o—

# ଗାନ୍ଧୀଗ୍ରାମ ପଥେ

କୁମାର ରାମଚନ୍ଦ୍ର ମିଶ୍ର

ଅପ୍ରେଲ ୨୮ ତାରିଖ ରାତି ୧୨ଟା । ମୁଁ ଓ ମୋର ଅନ୍ୟ ତିନିଜଣ ବନ୍ଧୁ ମାନ୍ଦ୍ରାଜ ମେଲ୍‌ର ଗୋଟିଏ ତୃତୀୟଶ୍ରେଣୀ ବଗି ଭିତରକୁ ଗୋଟାଏ ଉତ୍ତେଜନାରେ ପଶିଗଲୁଁ । ଉତ୍ତେଜନାଟା ଥିଲା ଓ୍ୟାର୍ଦ୍ଧାର 'ଗାନ୍ଧୀ ସ୍ମାରକ ପରିଷଦ' ଦ୍ୱାରା ଆୟୋଜିତ ନିଖିଳ ଭାରତ ଗ୍ରୀଷ୍ମକାଳୀନ ଶିକ୍ଷା ଶିବିରରେ ଯୋଗଦେବାକୁ ମିଳିଥିବା ସୁଯୋଗଟି । ଶିବିରଟି ହେଉଥାଏ ଗାନ୍ଧୀଗ୍ରାମରେ । ମାନ୍ଦ୍ରାଜରୁ ତ୍ରିଚିନାପଲ୍ଲି ଲାଇନରେ ୩୧୨ ମାଇଲ ଗଲେ ଏହି ଗାନ୍ଧୀଗ୍ରାମ ପଡେ । ଅବଶ୍ୟ ଗାନ୍ଧୀଗ୍ରାମ ବୋଲି କୌଣସି ରେଲଓ୍ୱେ ଷ୍ଟେସନ୍ ନାହିଁ । ଆମ୍ବାତୁରାଇ ଷ୍ଟେସନର ଫର୍ଲଙ୍ଗେ ଦୂରରେ ଏହି ସ୍ଥାନଟି ଅବସ୍ଥିତ । ହଁ, ଆମେ ବଗିରେ ଉଠି ଶୁଣିଲୁ ଯେ ବଗିଟି ଓ୍ୟାଲଟିଅରଠାରେ ରହିଯିବ, କିନ୍ତୁ ଆମର ସିଧା ମାନ୍ଦ୍ରାଜ ଯିବାର କଥା । ସେତେବେଳେ ଆଉ ଉପାୟ ନ ଥିଲା, ଗାଡ଼ି ଛାଡ଼ିବାକୁ ମୋଟେ ଆଉ ୨ । ୩ ମିନିଟ । କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ଚୁପ୍‌ଚାପ୍ ଗାଡିରେ ବସିରହିଲୁଁ । ପରଦିନ ସକାଳେ ଯାଇ ମାନ୍ଦ୍ରାଜରେ ପହଞ୍ଚିବାକୁ ହେବ, ଶୋଇବା ଦୂରର କଥା, ଅନ୍ତତଃ ଟିକିଏ ବସିବା ତ ଦରକାର; କିନ୍ତୁ ସେତିକ ମଧ୍ୟ ଆମ ଭାଗ୍ୟରେ ଘଟି ନ ଥିଲା ।

ମଧ୍ୟମ ଶ୍ରେଣୀରେ ଯାଇଥିଲେ ଅବା ଟିକିଏ ସୁବିଧା ହୋଇଥାଆନ୍ତା କିନ୍ତୁ ବନ୍ଧୁମାନେ ଯୁକ୍ତି ଦର୍ଶାଇଲେ ଯେ ମଧ୍ୟମ ଶ୍ରେଣୀରେ ଗଲେ କନ୍‌ସେସନ୍‌ର ପୂର୍ଣ୍ଣ ସୁଯୋଗ ମିଳିବନାହିଁ । କାରଣ ମଧ୍ୟମ ଶ୍ରେଣୀରେ ଗଲେ ତୃତୀୟ ଶ୍ରେଣୀର ପୂର୍ଣ୍ଣ ଭଡ଼ା ଦେବାକୁ ହେବ କିନ୍ତୁ ଆମେ ବର୍ତ୍ତମାନ ଅଧା ଭଡ଼ା ଦେଉଛୁ । ଯୁକ୍ତିଟି ଗ୍ରହଣୀୟ ମନେକରି ତୃତୀୟ ଶ୍ରେଣୀରେ ଯିବାର ସିଦ୍ଧାନ୍ତ କରିଥିଲୁଁ । ବେଞ୍ଚ ବାଡ଼କୁ ଆଉଜି ଆଖିବୁଜି ବସି ବସି ରାତିଟି କଟାଇବାକୁ ହେଲା । ସକାଳ ହେଲାବେଳକୁ ଆମେ ଆସି ବ୍ରହ୍ମପୁରରେ । ନିଦଟା ଭାଙ୍ଗିଗଲା । ଆଉ ଅଳ୍ପ ସମୟ ପରେ ଓଡ଼ିଶା ବାହାରକୁ ଆମକୁ ଗାଡିଟା ଟାଣି ନେଇଯିବ । ଆମେ ଯେ ଏଥିରେ ଅଧୀର ହୋଇ ଉଠିପଡିଲୁ ତା ନୁହେଁ—'ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଫଳ' ଡାକରେ ପେଉଁ କାନ ଅତଡ଼ା ପଡ଼ିଥିଲା ତାହାର ଫଳରେ ଆଉ ଶୋଇବା ସମ୍ଭବ ହୋଇ ନ ଥିଲା ।

ବ୍ରହ୍ମପୁର ପରେ ଆଉ ଓଡ଼ିଆ ସମ୍ବାଦପତ୍ରର ନାମ ଶୁଣିବାକୁ ମିଳିଲାନାହିଁ । ଖାଲି ସ୍ୱାଦେଶମିତ୍ରନ୍, ଆନ୍ଧ୍ରପତ୍ରିକା, ହିନ୍ଦୁ, ମେଲ ଏହି ନାଁ ସବୁ ଷ୍ଟେସନରେ ଶୁଣିବାକୁ ମିଳିଲା । ବ୍ରହ୍ମପୁର ପରେ ଇଚ୍ଛାପୁରଠାରେ ଅବଶ୍ୟ **'Eastern times'** କେତେଜଣ ହକର ବିକୁଥିଲେ ।

ଗତବର୍ଷ ସଂଖ୍ୟାମାନଙ୍କରେ ଶ୍ରୀ ପଥିକଙ୍କ ବର୍ଣ୍ଣନାରୁ ଜାଣିଥିବେ, ଓଡ଼ିଶାରେ ଯେତେବେଳେ ବର୍ଷା ଅଭାବରେ ଭୂଇଁ ଫାଟି ଆଁ କରିଛି—ସେତେବେଳେ ସେଆଡ଼େ ବର୍ଷା ହୋଇ ପାଣି ପୂରି ରହିଛି । ଖୋର୍ଦ୍ଧା ଛାଡ଼ିବା ପରେ ଛଣ ଛପର ଘର ଆଉ ଦେଖିବାକୁ ମିଳିଲା ନାହିଁ । ଅର୍ଥାତ୍ ଲାଇନ୍ କଡ଼ରେ କୌଣସି ଛଣ ଛପର ଘର ନ ଥିଲା । ଏଣିକି କେବଳ ତାଳପତ୍ର ଛାଉଣି ଘର ସବୁ ଦେଖିବାକୁ ମିଳିଲା । ଘରଗୁଡ଼ିକ ଗୋଟିଏ ଗୋଟିଏ କଣକଅ ଭଳି ଦେଖା ଯାଉଥାଏ । ସେଗୁଡ଼ିକ ସାରୁ ହୋଇଥିଲେ ମଧ୍ୟ ଛଡ଼ା ଛଡ଼ା ହୋଇଥିବାରୁ ସ୍ୱାସ୍ଥ୍ୟରକ୍ଷାର ନିୟମାନୁଯାୟୀ ଘର-ଗୁଡିକର ଚାରିପଟ ପରିଷ୍କାର ରଖିବାକୁ ସୁବିଧା । ଇଚ୍ଛାପୁର-ଠାରୁ ପଲସା ଜଙ୍କସନ୍ ପର୍ଯ୍ୟନ୍ତ କେତେକ ଧାନ କିଆରି ଦେଖିବାକୁ ମିଳୁଥିଲା । ତା ପରେ ମାଣ୍ଡିଆ, ଯଅ, ମକ୍କା ଦେଖିବାକୁ ମିଳିଲା ।

ଆଗରୁ କହିଛି ଆମକୁ ଆମ ଡବାଟି ବଦଳାଇବାକୁ ହେବ ବୋଲି । ଶୁଣିଲୁ ଓ୍ୟାଲଟିଅର ଠାରେ ଖୁବ୍ ଭିଡ଼ ହେବ; ତେଣୁ ପଲସାଠାରେ ବଦଳାଇ ନେବା ଭଲ । ତେଣୁ ଆମେ ବଦଳାଇ ଦେଲୁଁ । ତୃତୀୟ ଶ୍ରେଣୀ ଡବାରେ ପାର୍ଟିଶନ୍, ଠେଲାପେଲା ତ ରହିଛି; ତା ବ୍ୟତୀତ ଅଧିକ ରହିଛି ମାଡ଼ଗୋଳ । ଆପଣ କୌଣସି ଲୋକକୁ ଟିକିଏ କିଛି କହିଲେ, ସାଙ୍ଗେ ସାଙ୍ଗେ ସେମାନେ ମାରିବାକୁ ଉଠି ଆସିବେ । "ଗାଡ଼ିରେ ବସିଥିବା ପର୍ଯ୍ୟନ୍ତ କାହାକୁ କିଛି କହିବ ନାହିଁ, କିମ୍ବା କାହା ସଙ୍ଗେ ଯୁକ୍ତିତର୍କ କରିବ ନାହିଁ" ବୋଲି ଆମକୁ ଆଗରୁ କୁହାଯାଇଥିଲା; ତେଣୁ **"To win an argument is to avoid it"** ସିଦ୍ଧାନ୍ତ ଗ୍ରହଣ କରି ଚୁପ୍ ହୋଇ ବସିଥାଉଁ । ତଥାପି ଆମକୁ ଗୋଟିଏ ଛୋଟ କାଟିଆ ସଂଗ୍ରାମର ସମ୍ମୁଖୀନ ହେବାକୁ ହେଲା । ପାହାହେଉ ଭାଗ୍ୟକୁ କୌଣସିମତେ ତାର ସମାଧାନ ହୋଇଗଲା । ପଲସାଠାରେ ଆମେ ଆମର ନିତ୍ୟକର୍ମ ଶେଷ କରି ଦେଖିଲୁ ଯେ ଗାଡ଼ି ଏଠାରେ ଆଉ ମୋଟେ ଦୁଇ ତିନି ମିନିଟ ରହିବ, ତେଣୁ ସେଠାରେ ଖାଇବାର କୌଣସି



ସୁବିଧା ନାହିଁ । ନିର୍ଦ୍ଦିଷ୍ଟ ଖାଦ୍ୟ ପାଇଁ ସେଠାରେ ଟିକେଟ୍ ହେଉଥାଏ । ଅର୍ଥାତ୍ ଆପଣ ଯଦି ଏଠାରେ ଆପଣଙ୍କ ନାମ ଲେଖି ପଇସା ଦେଇ ଦେବେ ତେବେ ଆପଣ ଓ୍ୟାଲଟିଅର ଠାରେ ଯାଇ ଶୀଘ୍ର ଖାଇ ପାରିବେ । ଗାଡ଼ି ଏଠାରେ ୪୦ ମିନିଟ ରହେ । ଆଗରୁ ସବୁ ଖାଦ୍ୟ ବଢ଼ା ହୋଇ ରଖା ଯାଇଥାଏ । ଏ ପ୍ରକାର ବ୍ୟବସ୍ଥା ଖୁବ୍ ଭଲ । ଆପଣ ଚାହିଁଲେ ସେମାନେ ଡବାରେ ମଧ୍ୟ ଆଣି ଦେଇଯିବେ । ମିଲ ଗୋଟି ସେମାନେ ୦।୧୪/ କରି ନିଅନ୍ତି । ଖାଦ୍ୟ ସେପରି ଖରାପ ନୁହେଁ ତଥାପି ଉତ୍ତର ଭାରତୀୟମାନଙ୍କୁ ସାଧାରଣତଃ ଯେଉଁମାନେ ଅଭ୍ୟସ୍ତ ନୁହନ୍ତି, ସେମାନଙ୍କୁ ଭଲ ତ ଲାଗିବ ନାହିଁ ବରଂ ଦେହ ଖରାପ ହେବ । ସେଥିପାଇଁ କେବଳ ଭାତ, ଦହି, ପାମ୍ପଡ଼ ଓ ମିଠା ଦେଇ ଖାଇନେବା ଭଲ । ଯିଏ ସମ୍ବର (ଡାଲିଘାଣ୍ଟ), ରସ୍ମ (ଗୋଲମରିଚପାଣି) ପାଚେଡ଼ି ଆଦି ଖାଇ ପାରି କରି ପାରିଲା ସେ ଏସବୁ ଖାଇପାରେ । ଏହା ବ୍ୟତୀତ ମାଛ ମାଂସ ସବୁ ଅଛି । ସବୁଥିରେ ଲଙ୍କାର ପରିମାଣ ଖୁବ୍ ବେଶି, ତେଣୁ ଆମ୍ଭମାନଙ୍କୁ ବେଶି ଅସୁବିଧା ହୋଇଥାଏ । ଯୋଗକୁ ସେଦିନ ନିର୍ଦ୍ଦିଷ୍ଟ ମିଲ ସରି ଯାଇଥାଏ । ବୁଝିବାରୁ ଜଣାଗଲା ଯେ ଏଠାରେ ନିର୍ଦ୍ଦିଷ୍ଟ ମିଲ ପାଇଁ ଦାମ୍ ଦେଲେ ତୁନ୍‌ଠାରେ ଖାଇବାକୁ ମିଳିବ । ଆମ୍ଭେମାନେ ସମସ୍ତେ ସେଠାରେ ୪ଟି ମିଲର ଦାମ ଦେଲୁ । ଜଣଙ୍କ ଖାଦ୍ୟ ଗାଡ଼ିକୁ ଆଣା ହେବ, ଆଉ ଆମେ ତିନିଜଣ ଖାଇବାକୁ ଯିବୁଁ । ନ ହେଲେ ଜିନିଷପତ୍ର ପାଖରେ ପୁଣି ରହିବ କିଏ ? ଯାହାହେଉ ଗାଡ଼ି ଓ୍ୟାଲଟିଅର ଷ୍ଟେସନ ଛାଡ଼ିଲା । ତୁନ୍‌ରେ ସମସ୍ତେ ସେଦିନ ଖାଇନେଲୁ ।

ତା ପରେ ଦେଖାଗଲା ଆମ ଡବାରୁ ଲୋକ ଖାଲି ହୋଇଗଲେଣି, ଆମେ ସୁଯୋଗ ନ ହରାଇ ବାର୍ଥ ଉପରେ ଶୋଇଗଲୁଁ । ଦୁଇଟି ଷ୍ଟେସନ ପରେ ଜଣେ ଟି. ଟି. ଇ.ଙ୍କ ଡାକରେ ନିଦ ଭାଙ୍ଗିଗଲା । ମନରେ ଖୁବ୍ ରାଗ ହେଉ-ହେଉଥାଏ କିନ୍ତୁ ମନେ ପଡ଼ିଗଲା ରାଗିବା ବିପଦ୍‌ଜନକ । ଖୁବ ରାଗୀ ଏମାନେ । ଲଙ୍କା ବେଶି ଖାଆନ୍ତି ବୋଲି ଏମାନେ ରାଗୀ— ଏ କଥା ନିଜେ ସ୍ୱୀକାର କରନ୍ତି । ଟି.ଟି.ଇ. ଜଣକ ହସି ହସି ଇଂରାଜୀରେ ପଚାରିଲେ "That berth is meant for luggages Sir," (ସେ ସ୍ଥାନଗୁଡ଼ିକ ମାଲପତ୍ର ରଖିବା ପାଇଁ ହୋଇଛି) । ମୁଁ ସଙ୍ଗେ ସଙ୍ଗେ କହି ପକାଇଲି, "Excuse me, we are all human luggages." (ମାଫ୍ କରିବେ । ଆମେ ସମସ୍ତେ ଜୀଅନ୍ତା ମାଲ) ଇଂରାଜୀ ପଢ଼ୁଆ ଯାତ୍ରୀମାନେ ହସ ସମ୍ଭରଣ କରି ପାରି ନ ଥିଲେ । ଯାହାହେଉ ସେ ଏ ଉତ୍ତରରେ ସନ୍ତୁଷ୍ଟ ହୋଇ ଆଉ କିଛି ନ ପଚାରି ଅନ୍ୟ ଡବାକୁ ଚାଲିଗଲେ । ଆମେ ସ୍ୱସ୍ତିରେ ନିଶ୍ୱାସ ନେଲୁଁ । ତା ପରଦିନ ସକାଳ ୬।୩୦ରେ ମାନ୍ଦ୍ରାଜରେ ପହଞ୍ଚିବାର କଥା, କିନ୍ତୁ ୭ଟା ବେଳକୁ ଉଠି ଦେଖିଲୁ ଯେ ମାନ୍ଦ୍ରାଜ ଆହୁରି ୫୦ ମାଇଲ ଅଛି । ଆଉ ନିଦ ହେଲାନି, ପିଲାଦିନର "ମାନ୍ଦ୍ରାଜ ସହର ଆହା କେଡ଼େ ମନୋହର, ଦେଖିଦେଲେ ଖୋଲିଯିବ ନୟନ ଡ଼ମ୍ବର" ପଦ୍ୟଟି ବାରମ୍ବାର ମନେ ପଡୁଥିଲା । ଦୂର ଦିଗ୍‌ବଳୟକୁ ଚାହିଁ ରହିବା ବ୍ୟତୀତ ଆଉ ଉପାୟ ନ ଥିଲା । ଏଣିକି ସମସ୍ତ ଅପରିଚିତ କିନ୍ତୁ କଟକଠାରୁ ଆମ ସଙ୍ଗେ ସଙ୍ଗେ କେବଳ ଗ୍ରାଣ୍ଡ ଟ୍ରଂକ ରୋଡ଼ଟି ନିଜର ସାଥୀ ପରି ଚାଲି ଚାଲି ଆସିଛି । ସକାଳୁ ଉଠି ତାକୁ ମଧ୍ୟ ଆମ ସାଙ୍ଗରେ ଗତି କରୁଥିବାର ଦେଖିବାକୁ ମିଳିଲା । ହଠାତ୍ ଗୋଟାଏ ଷ୍ଟେସନରେ ଗାଡ଼ି ରହିଗଲା । ଗାଡ଼ିଟା ପ୍ଲାଟଫର୍ମରୁ ଟିକିଏ ଦୂରକୁ ଚାଲିଯାଇ ଥିବାରୁ ଷ୍ଟେସନ ନାଁ ଟା ଦିଶୁ ନ ଥିଲା । ଦୂରରେ ଅସ୍ପଷ୍ଟ ଭାବରେ ମାନ୍ଦ୍ରାଜ ସହର ଭଳି ବୁଝିବାରୁ ଜଣାଗଲା ଯେ ମାନ୍ଦ୍ରାଜ ପେନ୍‌ସିଲ ତିଆରି କାରଖାନା ମାନ୍ଦ୍ରାଜଠାରୁ ୩୦ ମାଇଲରୁ ଅଧିକ ଦୂର । ଏହା ଭାରତର ଗୋଟିଏ ବଡ଼ ପେନ୍‌ସିଲ ତିଆରି କାରଖାନା । କୌଣସି ମତେ ଯାଇ ୮ଟା ୫ ମିନିଟରେ ମାନ୍ଦ୍ରାଜ ସେଣ୍ଟ୍ରାଲରେ ପହଞ୍ଚିଲୁ । ମାନ୍ଦ୍ରାଜ ସହରରେ ୭ଟି ରେଲ ଷ୍ଟେସନ ଅଛି । ଷ୍ଟେସନରେ ଓହ୍ଲାଇବା ସଙ୍ଗେ ସଙ୍ଗେ ଅବକାରୀ ବିଭାଗ ଆମ ଜିନିଷପତ୍ର ଯାଞ୍ଚ କରିନେଲା ଓ ଖଣ୍ଡିଏ ଖଣ୍ଡିଏ କାଗଜ ଟିପା ଆଣି ମାଲ ଉପରେ ଲଗାଇ ଦେଲା । ଏହି ସମୟରେ ଟିକିଏ ସାବଧାନ ହେବାର କଥା । ଏହି ଯାଞ୍ଚବେଳେ ବହୁତ ଚୋରି ହୁଏ । ବର୍ତ୍ତମାନ ଏଠାରୁ ଯିବାର କଥା । ଆଗରୁ ଇଉ. ପି. ଆଇ କଟକ ଶାଖାର ମ୍ୟାନେଜର୍ ମହୋଦୟ ଆମ୍ଭମାନଙ୍କ ପାଇଁ ମାନ୍ଦ୍ରାଜରେ ରହିବାର ବନ୍ଦୋବସ୍ତ କରି ଦେଇଥାଅନ୍ତି । ତେଣୁ ଆମେ ଟାକ୍‌ସିରେ ଯାଇ ଯଥା ସ୍ଥାନରେ ପହଞ୍ଚିଲୁ । ନୂଆ ଲୋକଙ୍କପାଇଁ ଟାକ୍‌ସି ଖୁବ୍ ସୁବିଧା । ଅବଶ୍ୟ ବହୁ ଟାଉନ୍‌ବସ ଅଛି କିନ୍ତୁ ନମ୍ବର ଜାଣି ଉପଯୁକ୍ତ ସ୍ଥାନରେ ବସ୍ ନ ବଦଳାଇଲେ ଯଥା ସ୍ଥାନରେ ପହଞ୍ଚିବା ତ ଦୂରର କଥା ଆହୁରି ତିନି ଚାରିମାଇଲ ଦୂରକୁ ଚାଲିଯିବ । ବସ୍‌ରେ ବର୍ତ୍ତମାନ ଭାରି ଭିଡ଼ । ଟ୍ରାମ ବନ୍ଦ ହୋଇ ଯାଇଥିବାରୁ ଏହା

ହୋଇଛି ବୋଲି ଆମର ଧାରଣା ଥିଲା କିନ୍ତୁ ଟ୍ରାମ ବନ୍ଦ ହୋଇଛି ଭଲ ହୋଇଛି ବୋଲି ସ୍ଥାନୀୟ ବାସିନ୍ଦାମାନଙ୍କ ମତ । ଆମ୍ଭେମାନେ ତାମିଲନାଡ଼ କଂଗ୍ରେସ କମିଟିର ସଭାପତିଙ୍କର ଆତିଥ୍ୟ ଗ୍ରହଣ କରିଥିଲୁଁ । ତାଙ୍କ ବସାଟି ମାନ୍ଦ୍ରାଜ ସମୁଦ୍ରକୂଳ ନିକଟରେ ।

ବସା ଛାତ ଉପରୁ ଦେଖିଲେ ପାର୍ଥସାରଥୀଙ୍କ ମନ୍ଦିର ଦେଖାଯାଏ । ମନ୍ଦିରରେ କୃଷ୍ଣଙ୍କର ପ୍ରତିମୂର୍ତ୍ତି ରଖା ହୋଇଛି କିନ୍ତୁ ଜଣେ ହେଲେ କେହି କୃଷ୍ଣଙ୍କ ମନ୍ଦିର ବୋଲି କହନ୍ତି ନାହିଁ । ସମସ୍ତେ କହନ୍ତି ପାର୍ଥସାରଥୀ ମନ୍ଦିର । ଏ ମନ୍ଦିର ଦକ୍ଷିଣ ଭାରତର ଅନ୍ୟାନ୍ୟ ମନ୍ଦିର ପରି ଗୋଟିଏ ବିନ୍ଦୁରେ ଶେଷ ନୁହେଁ । ଏହାର ଉପରେ ବେଢ଼ା ନାହିଁ । ଏହି ମନ୍ଦିର ଗାତ୍ରରେ ମାର୍ବଲରେ ଗୀତା ଖୋଦିତ ହୋଇଛି । ଏଠାରେ ଓଡ଼ିଆରେ ମଧ୍ୟ ଗୀତା ଲେଖା ହୋଇଥିବାର ଦେଖିଲୁ । ସିମାଚଳଠାରେ ଓଡ଼ିଆ ରାଜାଙ୍କ କୀର୍ତ୍ତି ଲେଖା ହୋଇଛି ବୋଲି ଶୁଣିଥିଲୁ । ଏଠାରେ ସେପରି କେଉଁଠି ନ ଥିଲା । ଇଚ୍ଛାପୁର ଛାଡ଼ିବା ପରେ ପ୍ରଥମେ ଓଡ଼ିଆ ଏଠାରେ ଦେଖିବାକୁ ମିଳିଥିଲା । ସନ୍ଧ୍ୟା ଗାଡ଼ିରେ ଆମକୁ ମାନ୍ଦ୍ରାଜ ଛାଡ଼ିବାକୁ ହେବ । ତେଣୁ ପ୍ରଧାନ ପ୍ରଧାନ ଦର୍ଶନୀୟ ବସ୍ତୁ ଦେଖି ନେବାକୁ ଆମ୍ଭେମାନେ ବାହାରିଲୁଁ । ସେଠାରେ ଜଣେ ବି. ଏସ୍‌ସି. ପଢୁଥିବା ଛାତ୍ର ଆମ ସଙ୍ଗରେ ବୁଲାଇ ଦେଖାଇବାକୁ ଯାଇଥାଆନ୍ତି । ପାର୍ଥସାରଥୀ ମନ୍ଦିର ଅର୍ଥାତ୍ ଟ୍ରିପ୍ଲିକେନ୍‌ରୁ ଅମେ ପ୍ରଥମେ ସହରର ଲାଇଟ୍ ହାଉସ୍ ଦେଖିବାକୁ ଗଲୁ; କିନ୍ତୁ ଏହା ଘ ୧ ଣ୍ଟା ବେଳେ ଖୋଲିବ ଶୁଣି ଚୂଇନା ବଜାରକୁ ଆସିଲୁ । ଏହି ବଜାରରେ ଜିନିଷ ଦର ଟିକିଏ ବେଶି । ସାହେବମାନେ କେଉଁଠି ଅଳ୍ପ ଦାମ୍ ଦିଅନ୍ତି ନାହିଁ, ତେଣୁ ଜିନିଷର ଦର ବେଶି କରାହୋଇଛି । ଅଳ୍ପଦୂର ଗଲେ ଭାରତର ଦୁଇଟି ପ୍ରସିଦ୍ଧ ଖବର କାଗଜ ଅଫିସ Hindu ଏବଂ Mail । ଏହି ରାସ୍ତାକୁ **Mount road** କହନ୍ତି । ହିନ୍ଦୁ ପତ୍ରିକାର ବିଲ୍ଡିଂଟି ଆମ ଓଡ଼ିଶାର ସମସ୍ତ ଦୈନିକର ଅଫିସ ସଙ୍ଗେ ସମାନ ହେବ । 'ମେଲ'ର ଅବଶ୍ୟ ସେତେ ବଡ଼ କୋଠା ନାହିଁ । ତା ପରେ ଅମେ ମାନ୍ଦ୍ରାଜ ଅଇନ କଲେଜ ଓ ହାଇକୋର୍ଟ ଦେଖିବାକୁ ଗଲୁଁ । କଲେଜଟି ଗୋଟିଏ ଗିର୍ଜା ପରି ଦେଖାଯାଏ । ଭୁବନେଶ୍ୱର ମାର୍କେଟ ପ୍ରଭୃତି ଯେପରି ନୂଆ ରାଜଧାନୀରେ ନିର୍ମିତ ହୋଇଛି ଏଗୁଡ଼ିକ ସେହିପରି । ସହରର ବିଭିନ୍ନ ସ୍ଥାନରେ ବ୍ରୋଞ୍ଜର ବହୁତ ପ୍ରତିମୂର୍ତ୍ତି ଦେଖିବାକୁ ମିଳେ କିନ୍ତୁ ସେଗୁଡ଼ିକ ସବୁ ଇଂରେଜ ସାହେବଙ୍କର । ପରେ ରାଜାଜୀ ହଲ (ଯେଉଁଠି ତାମିଲନାଡ଼ ଓ କଂଗ୍ରେସ ରାଜାଜୀଙ୍କ ଇସ୍ତଫା ସମ୍ବନ୍ଧୀୟ ଆଲୋଚନା ନିକଟରେ କରିଥିଲେ), ମାନ୍ଦ୍ରାଜ ରାଜ୍ୟ ବ୍ୟବସ୍ଥାପକ ସଭାଘର ଦେଖିସାରି ଅମେ ବଣାଘର ଦେଖିବାକୁ ଗଲୁଁ । ଏହି ବଣାଘର ଦେଖିବାକୁ ଦୈନିକ ଶହ ଶହ ଲୋକ ଆସନ୍ତି । ଏଠାରେ ଦୁଇଅଣା ପ୍ରବେଶିକା ଫିସ ଦେବାକୁ ହୁଏ । ଏଠାରେ ମଧ୍ୟ କ୍ୟୁ କରିବାକୁ ହେବ; ତେଣୁ ଅମେ ପ୍ରାୟ ସାଢ଼େ ଗୋଟାଏ ବେଳକୁ ଅନୁମତି ପାଇଲୁ । ଏହା ଉପରୁ ମାନ୍ଦ୍ରାଜ ସହର ସଂପୂର୍ଣ୍ଣ ଦେଖାଯାଏ । ଏଠାରେ ଛବି ଉଠାଇବା ମନା । ଆମର କ୍ୟାମେରା ସବୁ ଆମକୁ ତଳେ ରଖି ଦେଇ ଆସିବାକୁ ହୋଇଥିଲା ।

ଏହା ପରେ ଆମର ଷ୍ଟାନ୍‌ଲେ ମେଡିକାଲ କଲେଜ ଦେଖିବାର କଥା । ଆମ ସଙ୍ଗେ ଯେଉଁ ଡାକ୍ତରୀ ଛାତ୍ର ଥିଲେ ସେମାନେ Anatomy ଯାଦୁଘର ଦେଖିବାର ପ୍ରବଳ ଇଚ୍ଛା ପ୍ରକାଶ କଲେ । ଦେଖିବାର ଅନୁମତି ପାଇଁ ଅମେ କଲେଜର ପ୍ରିନ୍ସିପାଲଙ୍କ ପାଖକୁ ଫୋନ କଲୁଁ । ବର୍ତ୍ତମାନ ଏଠାରେ ଡାଃ ପିସାରୁଟି ପ୍ରିନ୍ସିପାଲ ଅଛନ୍ତି, ଯେ କି ଓଡ଼ିଶା ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରୁ ନିକଟରେ ପେନସନ୍ ନେଇ ଏଠାରେ ଅବସ୍ଥାନ କରୁଥିଲେ । ଫୋନ କରି ଜଣାଗଲା ଯେ ସେ ନାହାନ୍ତି । ତଥାପି କୌଣସି ସୁଯୋଗ ଜୁଟିବ ଭାବି ଅମେ ସେଠାକୁ ଗଲୁଁ । ଡାଃ ବସୁ ବୋଲି ଜଣେ ଓଡ଼ିଶାର ରିସର୍ଚ୍ଚ ଛାତ୍ର ସେଠାରେ ଅଛନ୍ତି । ସେ ମହାଶୟ ବ୍ୟବସ୍ଥା କରିବା ଫଳରେ ଆମକୁ ସେ ଯାଦୁଘର ଦେଖିବାକୁ ମିଳିଥିଲା ଏଠାରେ ମଣିଷ ଅଭ୍ୟନ୍ତରୀଣ ସମସ୍ତ ଅଂଶ ରଖା ଓ ହୋଇଛି । ସେଠାରୁ ମାନ୍ଦ୍ରାଜ ପ୍ରାଦେଶିକ ଯାଦୁଘର ଦେଖିବାକୁ ଆସିଲୁ । ଏଠାରେ ମହେନ୍‌ଜୋଦାରୋ ହରପା ପ୍ରଭୃତିର Imitations ରଖା ଯାଇଛି । ଦକ୍ଷିଣ ଭାରତର ବିଭିନ୍ନ ସ୍ଥାନରୁ ଅବିଷ୍କୃତ ମୂର୍ତ୍ତି, ତା ବ୍ୟତୀତ ଭିକ୍‌ଟୋରିଆ ସ୍ମୃତି ସୌଧ' ପରି ବହୁତ ଅସ୍ତ୍ର ଶସ୍ତ୍ର ମଧ୍ୟ ରଖାଯାଇଛି । କେବଳ ଗୋଟିଏ ମାନଚିତ୍ର ରେ ଓଡ଼ିଶାର କୋଣାର୍କ, ଭୁବନେଶ୍ୱର ନାମ ବ୍ୟତୀତ ଅନ୍ୟ କେଉଁଠି କିଛି ଓଡ଼ିଶାର ଦେଖିବାକୁ ମିଳିଲା ନାହିଁ । ତା ପରେ ଚିଡ଼ିଆଖାନା ଦେଖିବାକୁ ଅମେ ଗଲୁଁ । ଏହା ସହରର କୋଳାହଳ ଠାରୁ ଟିକିଏ ଦୂରରେ । ଏଠାରେ ନାନା ରକମର ପଶୁ ପକ୍ଷୀ ଅଛନ୍ତି । ସବୁଠାରୁ ଉପଭୋଗ୍ୟ ଜିନିଷ ହେଉଛି ନୌକା ଖେଳ । ୦୫ ପଇସା ଦେଲେ ଆପଣଙ୍କୁ ଗୋଟିଏ ନୌକା ଦିଆ ହେବ । ଅପଣ ଦୁଇଘଣ୍ଟା ପର୍ଯ୍ୟନ୍ତ

ପୋଖରୀରେ ବୁଲି ପାରନ୍ତି । ପୋଖରୀର କୂଳ ଅତୀବ ଚମତ୍କାର । ରବିବାର ଦିନ ୫°୬ ଦେଲେ ହାତୀ, ଓଟ, ଘୋଡ଼ା ପ୍ରଭୃତି ଉପରେ ବସିବା ଶିଖାଇ ଦିଅଯିବ । ଆମେ କୌତୂହଳବଶତଃ ହାତୀ ଉପରେ ବସି ଫଟୋ ଉଠାଇଥିଲୁ । ବାଟରେ ଫେରିବାବେଳେ Moor market ଦେଖିଥିଲୁ । ଏଠାରେ ଛୁଞ୍ଚିଠାରୁ ଜାହାଜ ପର୍ଯ୍ୟନ୍ତ ସବୁ ମିଳେ । କିନ୍ତୁ ସବୁ ଜିନିଷ ପୁରୁଣା । ଜିନିଷଗୁଡ଼ିକ ଅତି ପୁରୁଣା ହୁଏ ଓ ଅତି ଶସ୍ତା ମଧ୍ୟ । ଆମ୍ଭେମାନେ ଶୀଘ୍ର ଶୀଘ୍ର ତାହା ବୁଲି ମାନ୍ଦ୍ରାଜ ସମୁଦ୍ର କୂଳ ଓ ବନ୍ଦର ଦେଖିବାକୁ ଆସିଲୁ । ଏହା ପୃଥିବୀର ସମୁଦ୍ର କୂଳମାନଙ୍କ ମଧ୍ୟରେ ଗୋଟିଏ ଭଲ ସମୁଦ୍ର କୂଳ । ସନ୍ଧ୍ୟା ସମୟରେ ଏହା ଜନପୂର୍ଣ୍ଣ ହୋଇ ଯାଏ । ସହର ଷ୍ଟାଣ୍ଡରେ ହଜାର ହଜାର ସହର ଆସି ଜମା ହୁଏ । ସମୟ ଅଭାବରୁ ତାହା ଉପଭୋଗ୍ୟ ହୋଇ ପାରିଲା ନାହିଁ । ଏଠାରୁ ମାନ୍ଦ୍ରାଜର ରେସିଡେନ୍ସି କଲେଜ ଦେଖାଯାଏ ଏହା ମାନ୍ଦ୍ରାଜର ଗୋଟିଏ ବଡ଼ କଲେଜ । ଅଳ୍ପ ସମୟ ମଧ୍ୟରେ ଜଣାଅଧିକେ ସବୁ ଦେଖି ହେଲା କିନ୍ତୁ ଅଡ୍ଡାୟାରର ଥିଅସଫିକାଲ ସୋସାଇଟି ଦେଖି ହେଲା ନାହିଁ । ଅନ୍ୟ କେବେ ସୁଯୋଗ ହେଲେ ଦେଖିବୁ ବାସନା ରଖି ସନ୍ଧ୍ୟା ୯ ଘଣ୍ଟାରେ ଗ୍ରାଣ୍ଡ୍ ଟ୍ରଙ୍କ୍ ଏକ୍ସ୍‌ପ୍ରେସ୍ ଯୋଗେ ମାନ୍ଦ୍ରାଜ—ଏଗ୍ମୋରରୁ ଗାନ୍ଧୀଗ୍ରାମ ଅଭିମୁଖେ ଯାତ୍ରା କଲୁ । ଏ ଗାଡ଼ିରେ ବହୁତ ଗାଡ ଯାଏ ତେଣୁ ଗାଡ଼ିରେ ମୋଟେ ଭିଡ଼ ନାହିଁ । ଶଯ୍ୟା ଉପରେ କାୟାକୁ କମ୍ବଳରେ ଲମ୍ବାଇ ଦେଇ ଗାନ୍ଧୀ ଗ୍ରାମର ସ୍ୱପ୍ନ ଦେଖୁଁ ଦେଖୁଁ ନିଦ୍ରା ଗଲୁ । (କ୍ରମଶଃ)

---

# ଚିଲିକାର ପ୍ରାଚୀନ କୀର୍ତ୍ତି

ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା

ଚିଲିକାରେ ଅନେକଗୁଡ଼ିଏ ପ୍ରାଚୀନ କୀର୍ତ୍ତି ଅଛି । ଏଗୁଡ଼ିକ ଓଡ଼ିଶା ଇତିହାସରେ ସ୍ଥାନ ପାଇବା କଥା । ମାତ୍ର ଏପର୍ଯ୍ୟନ୍ତ ଆମ ଦେଶର ଅତି ଅଳ୍ପ ସଂଖ୍ୟକ ପାଠକ ପାଠିକା ଏସବୁ କୀର୍ତ୍ତି ଦେଖିଥିବେ—ଯେଉଁମାନେ ଚିଲିକାର ଦୃଶ୍ୟ ଦେଖିବାକୁ ଆସନ୍ତି—ବିଶେଷତଃ, ସ୍କୁଲ କଲେଜ ଛାତ୍ର ଓ ଶିକ୍ଷକବୃନ୍ଦ ଅତି ତରତରରେ ଆସି ଏଠାର ଅତି ଅଳ୍ପ ଅଂଶମାତ୍ର ଦେଖିଯାନ୍ତି । ସବୁ କୀର୍ତ୍ତିଗୁଡ଼ିକୁ ତନ୍ନ ତନ୍ନ କରି ଦେଖିବାପାଇଁ ସେମାନଙ୍କର ଧୈର୍ଯ୍ୟ ନ ଥାଏ କି ସମୟ ମଧ୍ୟ ନ ଥାଏ । ଏଣୁ ଚିଲିକାର ପ୍ରାଚୀନ କୀର୍ତ୍ତିଗୁଡ଼ିକ ଏପର୍ଯ୍ୟନ୍ତ ଲୋକଲୋଚନ ଅଗୋଚରରେ ପଡ଼ିଛି ବୋଲି କହିପାରୁ ।

× × ×

ଅତି ସଂକ୍ଷିପ୍ତରେ ଚିଲିକାର ପ୍ରାଚୀନ କୀର୍ତ୍ତିଗୁଡ଼ିକୁ କ୍ରମରେ ବର୍ଣ୍ଣନା କରିବି :—

**୧) ତଣ୍ଡା କନାର**—ଚିଲିକା ଓ ସମୁଦ୍ର ମଧ୍ୟରେ ପ୍ରାୟ ଦୁଇଶହ ହାତ ଓସାରର ଗୋଟିଏ ବାଲି ବନ୍ଧ ଅଛି, ଏହାକୁ ତଣ୍ଡା କନାର କହନ୍ତି । ବହୁ ଯୁଗରୁ ଏହି ବାଲି ରାସ୍ତାହିଁ ଗଞ୍ଜାମ ଓ ପୁରୀ ମଧ୍ୟରେ ଥିବା ପ୍ରଧାନ ରାସ୍ତା ଥିଲା । ପୁରୀ ଯାତ୍ରୀମାନେ ଏହି ବାଟଦେଇ ଯା ଆସ କରୁଥିଲେ । ଯାତ୍ରୀମାନଙ୍କ ସୁବିଧା ପାଇଁ ପ୍ରତି ୨ ମାଇଲ ଦୂରରେ ଗୋଟିଏ 'ପାନ୍ଥନିବାସ' ଓ କୂଅଟିଏ ଖୋଳା ଯାଇଥିଲା । ଏଗୁଡ଼ିକୁ 'ଚଉ' କହନ୍ତି । ଏବେସୁଦ୍ଧା କେତୋଟି ଚଉ ଏ ଅଞ୍ଚଳରେ ରହିଛି । କାଞ୍ଚିଯୁଦ୍ଧବେଳେ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ ଏହିବାଟେ ଯା ଆସ କରିଥିଲେ ଏବଂ ତାହାଙ୍କୁ ସାହାଯ୍ୟ କରିବା ପାଇଁ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର କଳା ଓ ଧଳା ଘୋଡ଼ାରେ ଚଢ଼ି ଏ ବାଟେ ଯାଇଥିଲେ । ୧୮୦୩ରେ ଏହିବାଟେ ଇଂରେଜ ସୈନ୍ୟ ଗଞ୍ଜାମରୁ ପୁରୀ ଯାଇଥିଲେ ।

**(୨) ମାଣିକପାଟଣା** :—କାଞ୍ଚି ଯୁଦ୍ଧରେ ରାଜାଙ୍କୁ ସାହାଯ୍ୟ କରିବା ସକାଶେ ପୁରୀର ଠାକୁରମାନେ ଗଲା-ବେଳେ ବାଟରେ ଗୋଟିଏ ଗଉଡୁଣୀଠାରୁ ଦହି ଖାଇ ଥିଲେ । ପଇସା ନ ଥିବାରୁ ହାତର ମୁଦି ବନ୍ଧା ଦେଇଥିଲେ । ପରେ ରାଜା ଆସି ଗଉଡୁଣୀଠାରୁ ମୁଦି ମୁକୁଳାଇ ନେଇ ସେଠାରେ ଗଉଡୁଣୀର ନାମ ଅନୁସାରେ 'ମାଣିକପାଟଣା' ସ୍ଥାପନ କଲେ । ମାଣିକପାଟଣା ଦହି ସେଦିନୁ ପ୍ରସିଦ୍ଧି ଲାଭ କଲା ।

**(୩) ନରସିଂହ ପାଟଣା** :— ତଣ୍ଡାକନାରର ଉତ୍ତର ଦିଗରେ ମାଣିକପାଟଣାକୁ ଲାଗି ନରସିଂହ-ପାଟଣା ଅଛି । ଏଠାରେ ଗୋଟିଏ ପୁରୁଣା ଚଉରେ ଯେଉଁ ଶିଳାଲିପି ଅଛି, ସେହି ଲିପିରୁ ସ୍ପଷ୍ଟ ଜଣାଯାଏ ଅଜକୁ ୨୦୦ ବର୍ଷ ହେଲା ଏଠା ଚଉ ତିଆରି ହୋଇଥିଲା ।

**(୪) ସାତପଡ଼ା :**—ମାଣିକପାଟଣାର ଦକ୍ଷିଣକୁ ସାତପଡ଼ା ଗ୍ରାମ—ମତ୍ସ୍ୟଜୀବୀ ଏବଂ ଚଷା ଶ୍ରେଣୀର ଲୋକ ବାସ କରନ୍ତି । ସାତପଡ଼ା ଅପର ପ୍ରାଇମେରୀ ସ୍କୁଲ ସାମନାରେ ଗୋଟିଏ ମସ୍‌ଜିଦ ଥିଲା । ସେଇ ମସ୍‌ଜିଦ ଗୋଟିଏ ପ୍ରସ୍ତର ଖମ୍ବରେ ଯେଉଁ ଓଡ଼ିଆ ଲିପି ଅଛି ତହିଁରୁ ସ୍ପଷ୍ଟ ଜଣାଯାଏ ଯେ ଓଡ଼ିଶାର ମୁସଲମାନ ରାଜୁତିରେ ଏଠାରେ ତାହାଙ୍କର ଉପାସନା ମନ୍ଦିର ତିଆରି କରିଥିଲେ ।

**(୫) ଗୁରୁବାଇ :**—ପାରିକୁଦର ଉତ୍ତର ପୂର୍ବଦିଗର ଗୋଟିଏ ପ୍ରସିଦ୍ଧ ସ୍ଥାନ । ଏଠାରେ ପାରିକୁଦର ରାଜା ହରିସେବକ ମାନସିଂହ ୧୭୭୯ ରେ ବାଣପୁର ଛାଡ଼ି ଆସି ନିଜର ଗଡ଼ ନିର୍ମାଣ କରି ରହିଥିଲେ ।

**(୬) ଚଢ଼ିକା :**—ଗୁରୁବାଇ ନିକଟବର୍ତ୍ତୀ ଚିଲିକାତୀରର ଏ ପ୍ରସିଦ୍ଧ ଠାକୁରାଣୀ । ଚିଲିକାର ସାଧବମାନେ ବୋଇତ ବାଣିଜ୍ୟ କରି ଚାଲିବାରୁ ଦସ୍ୟୁମାନେ ଦେଇ ମହାନଦୀ ତୀରବର୍ତ୍ତୀ ବାଙ୍କୀ ଚଢ଼ିକା ଯାଏ ଯାଉଥିଲେ । ସେତେବେଳେ ଚଢ଼ିକାଙ୍କ ଏକ ପ୍ରତିମୂର୍ତ୍ତି ଆଣି ଏଠାରେ ସ୍ଥାପନ କଲେ ।

**(୭) କୃଷ୍ଣପ୍ରସାଦ :**—୧୭୯୫ ରେ ରାଜା ଭଗୀରଥି ମାନସିଂହ ଗୁରୁବାଇ ଛାଡ଼ି ଏଠାରେ ଗଡ଼ ନିର୍ମାଣ କଲେ । ଏ ଯାଗାଟି ନିରାପଦ ଥିବାରୁ ଏବଂ କୃଷ୍ଣ ନାମକ ଏକ ଗଉଡ଼ ଗାଈ ଚରାଉଥିଲା ବେଳେ ଗୋଟିଏ ଶୃଗାଳକୁ ଛଅଟି ମାଙ୍କଡ଼ ବସିଥିବା ଦୃଶ୍ୟ ଦେଖି ରାଜା ଏ ଯାଗାଟି ଶୁଭଥିବାର ସ୍ଥିର କରି ଏଠାରେ ନିଜର ଗଡ଼ ନିର୍ମାଣ କଲେ ।

**(୮) କାଳୀଜୟୀ :**—ବାଲୁଗାଁ ଓ ପାରିକୁଦ ମଧ୍ୟସ୍ଥ ଚିଲିକାରେ ଗୋଟିଏ ଛୋଟ ପାହାଡ଼ ଅଛି । ଏଠାରେ ବାଣପୁରର ରାଜା ଜଗନ୍ନାଥ ମାନସିଂହ ୧୬୫୭ ଖ୍ରୀଷ୍ଟାବ୍ଦରେ ଗୋଟିଏ ମନ୍ଦିର ଗଢି ନିଜର ଇଷ୍ଟଦେବୀ 'କାଳୀ'ଙ୍କୁ ସ୍ଥାପନ କଲେ । ପରେ ଏଇ କାଳୀଙ୍କ ଯୋଗୁ ପାରିକୁଦର ରାଜା ଭଗୀରଥି ମାନସିଂହ (୧୭୯୫-୧୮୧୫) ନିଜର ଶତ୍ରୁଙ୍କୁ ପରାସ୍ତ କରି ଯୁଦ୍ଧ ଜୟ କରିଥିବାରୁ କାଳୀଙ୍କ ନାମ 'କାଳୀଜୟୀ' ହୋଇଲା । ଚିଲିକାର ନାବିକ ମାନେ କାଳୀଜୟୀଙ୍କୁ ପୂଜା କରନ୍ତି । ନୂଆ ଡଙ୍ଗା, ଜାଲ ଓ ବାଣ ପ୍ରଭୃତି ବ୍ୟବହାର ସମୟରେ କାଳୀଜୟୀଙ୍କୁ ଭୋଗ ଲଗାନ୍ତି । ଗଞ୍ଜାମ ଓ ଓଡ଼ିଶାର ବହୁ ସଂଖ୍ୟକ ଭକ୍ତ ଏଠାକୁ ଆସି ପୂଜା କରନ୍ତି ।

**(୯) ପାରିକୁଦରେ ଜଗନ୍ନାଥ ମନ୍ଦିର:**—ବାଣପୁରର ରାଜା ଜଗନ୍ନାଥ ମାନସିଂହ ୧୬୫୩-୧୭୩୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ପାରିକୁଦର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଚିଲିକା ଦ୍ୱୀପପୁଞ୍ଜର ଏହାହିଁ ଅତି ବଡ଼ ଓ ପ୍ରସିଦ୍ଧ ମନ୍ଦିର । ପୁରୀ ଦେଉଳ ଗଠଣରେ ଏହା କାରୁକାର୍ଯ୍ୟପୂର୍ଣ୍ଣ ହୋଇ ତିଆରି ହୋଇଥିଲା ।

**(୧୦) ବଜ୍ରକୋଟ :**—ଜାଗିର ମାହାଲର ଦକ୍ଷିଣରେ ଅବସ୍ଥିତ ଗୋଟିଏ ପ୍ରଗନା । ଗଞ୍ଜାମ ସୀମାରେ ଥିବାରୁ ଏଠାରେ ବାଣପୁର ରାଜାମାନେ ଦଳେ ସୈନ୍ୟଙ୍କୁ ଜଗୁଆଳ ରଖି ଏହାକୁ ସୁଦୃଢ଼ କରିଥିଲେ । ସେଥିପାଇଁ ଏହାର ନାମ ବଜ୍ର-କୋଟ ହେଲା ।

**(୧୧) ମାଲୁଦ**— ଭଲ ପାଇକ ସୈନ୍ୟ ଥିବାରୁ ଏହାର ଏପରି ନାମ ହେଲା । ଓଡ଼ିଶାର ମରହଟ୍ଟା ରାଜୁତିରେ ଏଠାରେ ଜଣେ ପଠାଣ ଜଗୁଆଳ ଥିଲା । ସେହି ଜଗୁଆଳ ଗୁପ୍ତରେ ଇଂରେଜ ସୈନ୍ୟମାନଙ୍କୁ ଗଞ୍ଜାମରୁ ତଣ୍ଡାକନାଇ ଦେଇ ବାଟ ଦେଖାଇ ଚିଲିକା ମୁହାଣ ପାର କରାଇ ଥିଲେ । ଏ ଉପକାର ପାଇ ଇଂରେଜ ସୈନ୍ୟାଧ୍ୟକ୍ଷ ଜଗୁଆଳ ଫତେ ମହମ୍ମଦକୁ ଚିଲିକା ମଧ୍ୟସ୍ଥ ସବୁ ଅଞ୍ଚଳ ନିଷ୍କର ଜାଗୀର (ଉପହାର) ଦେଇଥିଲେ । ସେହିକୁ (୧) ବଜ୍ରକୋଟ (୨) ମାଲୁଦ (୩) ପାରିକୁଦ (୪) ମାଣିକପାଟଣା ଓ (୫) ଅନ୍ଧାରି ଅଞ୍ଚଳକୁ 'ଜାଗିର ମାହାଲ' କୁହାଗଲା । ଫତେମହମ୍ମଦ 'ଜାଗୀରଦାର' ହେଲେ ଓ ମାଲୁଦରେ ନିଜର ନଅର କରି ରହିଲେ । ମରହଟ୍ଟାଙ୍କୁ ଠକି ଇଂରାଜଙ୍କ ଠାରୁ ରାଜୁତି ପାଇବାରୁ ଫତେମହମ୍ମଦଙ୍କର 'ନିମକ ହାରାମ' ଉପାଧି ରହିଲା । ଦୁଇପୁରୁଷରେ ଏ ସବୁ ସମ୍ପତ୍ତି ନିଲାମରେ ଉଡ଼ିଗଲା । ଏକ୍ଷଣି ତାହାଙ୍କର ବଂଶଧର ଦାଣ୍ଡର ଭିକାରୀ ହୋଇଛନ୍ତି ।

**(୧୨) ବରକୁଦା**— ବହୁତ ବରଗଛ ଥିବାରୁ ଏହାର ଏପରି ନାମ ହୋଇଛି । ରମ୍ଭାଠାରୁ ୧୦ ମାଇଲ ଉତ୍ତରରେ ଚିଲିକାରେ ଥିବା ଗୋଟିଏ ଦ୍ୱୀପ । ଏଠାରେ ଖଲ୍ଲିକୋଟ ରାଜାଙ୍କର ଗୋଟିଏ ସୁନ୍ଦର 'ଚିଲିକା ଆଶ୍ରମ'·

ଅଛି । ଚିଲିକା ଦର୍ଶକମାନେ ଏଠାକୁ ଆସି ଚିଲିକାର ରମଣୀୟ ଦୃଶ୍ୟ ଦେଖିପାନ୍ତି । କବିବର ରାଧାନାଥ ରାୟ ଥରେ ଏଠାକୁ ଆସିଥିଲେ ଏବଂ ତାହାଙ୍କ ଅନୁରୋଧରେ ଏଠା ଆଶ୍ରମ ତିଆରି ହେବାର ଜଣାଯାଏ ।

**(୧୩) ସାହେବ କେନାଲ** :—ଇଂରେଜମାନେ ଓଡ଼ିଶା ଅଧିକାର କଲା ପରେ ଗଞ୍ଜାମ ସହରରେ ଦଳେ ଇଂରେଜ ସୈନ୍ୟ ରହୁଥିଲେ । ଚିଲିକାକୂଳସ୍ଥ ରମ୍ଭାଠାରୁ ଗଞ୍ଜାମର ଋଷିକୁଲ୍ୟା ମୁହାଣଯାଏ ଇଂରେଜମାନେ ଗୋଟିଏ ନାଳ ଖୋଳାଇ ଥିଲେ । ଏହି ନାଳରେ ଚିଲିକାର ଅଧିକା ପାଣି ନଦୀ ମୁହାଣ ଦେଇ ସମୁଦ୍ରକୁ ଯାଏ ଓ ସମୁଦ୍ରରୁ ଜୁଆର ପାଣି ଚିଲିକାକୁ ଆସେ । ତଦ୍ୱାରା ଚିଲିକାରେ ଅଧିକ ଲୁଣାମାଛ ହୁଏ । ଏବେ କେତେବର୍ଷ ହେଲା ଏ ନାଳ ବନ୍ଦ କରାଯାଇଛି ।

**(୧୪) କଲିଖିଆଦ୍ୱୀପ** :—ଇଂରେଜମାନେ ଗଞ୍ଜାମ ସହରରେ ନିଜର ରାଜଧାନୀ ରଖିଥିବା ସମୟରେ କଲି-କତାରେ ଇଷ୍ଟ-ଇଣ୍ଡିଆ-କମ୍ପାନୀ ଥିଲାବେଳେ ଗଞ୍ଜାମରେ ଜଣେ କଲେକ୍ଟର 'ସୋଡ଼ହାଉସ୍' ରମ୍ଭାର ୨ ମାଇଲ ଉତ୍ତରରେ ଥିବା ଗୋଟିଏ ଛୋଟ ପାହାଡ଼ରେ ନିଜର ଅଫିସ ପାଇଁ ଘରଟିଏ ନିର୍ମାଣ କରିଥିଲେ । ଏହାକୁ 'ବ୍ରେକ୍‌ଫାଷ୍ଟଆଇଲାଣ୍ଡ (ପଖାଳଖିଆ ଦ୍ୱୀପ) ନାଁ ଦେଇଥିଲେ । ଉକ୍ତ ଘର ନିକଟରେ ଚିଲିକା କୂଳରେ ପ୍ରସ୍ତର ସ୍ତମ୍ଭ ତିଆରି କରି ତହିଁ ଉପରେ ଗୋଟିଏ ଆଲୋକ ସ୍ତମ୍ଭ ରଖିବା ଯୋଗାଡ଼ ହୋଇଥିଲା ।

---

# ଟିକି ଚଢ଼େଇ

ଶ୍ରୀ ଭଗବାନ ମହାନ୍ତି

ଆମ ବାଡପଠ ଗୁହାଳ ଚାଳରେ କରିଛି ବସା
ଅଛନ୍ତି ଯେଉଁଠି କେତେଏ କେଜାଣି ଡାଉଁଶ ମଶା
ପାଉଁଶିଆ ରଙ୍ଗ ଦେହଟି ସାରା
ସକାଳୁ ସୂରୁଜ ନ ଉଠୁ ଉଠଇ ଶେଯରୁ ପରା
ଦେଖିଛି ଆଣଇ ଅଜଣା ଚାରକୁ ଥଣ୍ଟରେ ଚିରା । ୧ ।

ଓ'ହୁଉଦିଆ ଖରାବେଳେ ଜମା ନ ହୁଏ ନିଦ
କାନରେ ପଡ଼ଇ ଚିଁ ଚିଁ ପୁଣି ଚୁଚୁର୍ ଶବ୍ଦ
କେଉଁଠି ରହେ ସେ ଟିକି ଚଢ଼େଇ
ନୂଆକରି ଯେଉଁ ଚାଳ ଛେକିଅଛି ସନା ବଢ଼େଇ
ଦୁଇଟି ରହି ସେ ଦେଉନାହିଁ ମୋତେ ଜମା ପଢ଼େଇ । ୨ ।

ବାଡ଼ପଛପଟେ ଦେଶୀ ସାରୁଗଛ ଟେକିଛି ମୁଣ୍ଡ
ଲୁଚି ଲୁଚି ଯାଏ ତାହାରି ଭିତରେ ନକରି ତୁଣ୍ଡ
ଟିକି ଚଢ଼େଇର ଛୋଟିଆ ବସା
ଖୋଜି ଖୋଜି ଜମା ପାଏ ନାହିଁ ଶେଷେ କାମୁଡ଼େ ମଶା
ଦିନଯାକର ସବୁ ଚେଷ୍ଟା ହୁଏ ଫସରଫସା । ୩ ।

ପଛମୁଁ ଝାଉଁଳେ ନାଲି ଚକଚକ କିରଣ ଝର
ଟିକି ଚଢ଼େଇଟି ଉଡ଼ିଆସେ ଦୂରୁ ମେଲାଇ ପର
ଥଣ୍ଟେ ଆଣିଦାନା ଆଧାର ଯେତେ
ଚାଳପରେ ବସି ଭରିଦିଏ ସବୁ ସନ୍ତାନ ମୁଖେ । ୪ ।

ବନ୍ଧୁ କି ବାନ୍ଧବ ନୁହଁଇ ସେ ମୋର ଟିକି ଚଢ଼େଇ
ତଥାପି କାହିଁକି ମନରେ ଭାବନା ଦିଏ ବଢ଼େଇ
ଶଇଶବ କାଳୁ ରହିଛି ମନେ
ଚାଲିଛି ଆନନ୍ଦ ଚୁଚୁର୍ ଚୁଚୁର୍ ପୁରୁଣା ଗାନେ
ବସା ବାନ୍ଧି ଶାଳି ଆମ ବାଡ଼ପଠ ଗୁହାଳ କଣେ । ୫ ।



# ରେଡ଼ିଓ-ଆଇସୋଟୋପ୍ [ Radio-Isotope ]

ଶ୍ରୀ ବସନ୍ତକୁମାର ଦାସ ବି. ଏସ୍‌ସି

ପ୍ରତ୍ୟେକ ମୌଳିକ ପଦାର୍ଥର ପରମାଣୁରେ ପ୍ରୋଟନ୍, ନିଉଟ୍ରନ, ଇଲେକ୍‌ଟ୍ରନ, ପଜିଟ୍ରନ୍ ପ୍ରଭୃତି ସୂକ୍ଷ୍ମ ଉପାଦାନ-ଗୁଡ଼ିକ ନିର୍ଦ୍ଦିଷ୍ଟ ପରିମାଣରେ ଥାଏ । ପରମାଣୁର ଓଜନ ଏଥିରେ ଥିବା ନିଉଟ୍ରନ୍‌ର ସଂଖ୍ୟା ଉପରେ ନିର୍ଭର କରେ । କୌଣସି ପରମାଣୁରୁ ଉଲ୍ଲିଖିତ ଉପାଦାନ ଗୁଡ଼ିକୁ ପୃଥକ କରିବା ଅସମ୍ଭବ । କିନ୍ତୁ କେତେକ କ୍ଷେତ୍ରରେ ଏ ନିୟମର ବ୍ୟତିକ୍ରମ ଦେଖାଯାଏ । ଉଦାହରଣ ସ୍ୱରୂପ କୋବାଲ୍‌ଟ ନାମକ ଏକ ମୌଳିକ ପଦାର୍ଥର ପରମାଣୁରେ ୨୭ଟି ପ୍ରୋଟନ୍ ଏବଂ ୩୨ଟି ନିଉଟ୍ରନ୍ ଥାଏ । କିନ୍ତୁ ଆଉ ଏକ ପ୍ରକାର କୋବାଲ୍‌ଟ ଅଛି, ଯେଉଁଥିରେ ୨୭ଟି ପ୍ରୋଟନ୍ ଥାଏ କିନ୍ତୁ ୩୦ଟି ମାତ୍ର ନିଉଟ୍ରନ ଥାଏ । ଅବସ୍ଥା ଭେଦରେ ଏହି ନିଉଟ୍ରନ ସଂଖ୍ୟା ବଢ଼ି ବଢ଼ି ୩୭ ହୋଇପାରେ ଏବଂ କମି କମି ୨୮ ମଧ୍ୟ ହୋଇପାରେ । ରାସାୟନିକ ପ୍ରକ୍ରିୟା, ଧର୍ମ, ପ୍ରାକୃତିକ ଗୁଣାବଳୀ ଦୃଷ୍ଟିରୁ ପ୍ରଥମ ଏବଂ ଦ୍ୱିତୀୟ ପ୍ରକାର କୋବାଲ୍‌ଟ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । କେବଳ ମାତ୍ର ଓଜନରେ ତାରତମ୍ୟ ଦେଖାଯାଏ । ଦ୍ୱିତୀୟ ପ୍ରକାର କୋବାଲ୍‌ଟକୁ କୋବାଲ୍‌ଟର ଆଇସୋଟୋପ୍ (Isotope) କୁହାଯାଏ । (Iso ଅର୍ଥ ସମାନ, tope ଅର୍ଥ ରହିବା)

ବିଜ୍ଞାନ, କୃଷି, ଚିକିତ୍ସା ଏବଂ ବ୍ୟବସାୟ କ୍ଷେତ୍ରରେ ଆଇସୋଟୋପ୍ ଆଜିକାଲି ବହୁଳ ଭାବରେ ନିୟୋଜିତ ହେଉଛି । ବର୍ତ୍ତମାନ ପ୍ରାୟ ପ୍ରତ୍ୟେକ ମୌଳିକ ପଦାର୍ଥରେ ଆଇସୋଟୋପ୍‌ର ସନ୍ଧାନ ମିଳିଛି । ବିଜ୍ଞାନାଗାରରେ ୟୁରେନିୟମ୍ ବିସ୍ଫୋରଣ ସାହାଯ୍ୟରେ ଆଇସୋଟୋପ୍ ଗୁଡ଼ିକୁ ପ୍ରଥମେ ସ୍ୱତୋଜ୍ଜ୍ୱଳ(Radio-active) କରାଯାଏ । ସ୍ୱତୋଜ୍ଜ୍ୱଳ ଆଇସୋଟୋପ୍‌ଗୁଡ଼ିକୁ ରେଡିଓ-ଆଇସୋଟୋପ୍ (Radio-isotope ) କୁହାଯାଏ । ସୁବିଧା ନିମନ୍ତେ ଏଗୁଡ଼ିକୁ ରେଡ଼ିଓ କୋବାଲ୍‌ଟ, ରେଡ଼ିଓ-ସୋଡ଼ିଅମ୍, ରେଡ଼ିଓ-ଫସଫରସ୍ ପ୍ରଭୃତି ନାମରେ ମଧ୍ୟ କୁହାଯାଏ । ରେଡ଼ିଓ-ସୋଡ଼ିଅମ ଅର୍ଥ ସ୍ୱତୋଜ୍ଜ୍ୱଳ ସୋଡିୟମ ଆଇସୋଟୋପ୍ ।

ସ୍ୱକୀୟ ରଶ୍ମି ଯୋଗୁଁ ରେଡ଼ିଓ-ଆଇସୋଟୋପ୍ ଗୁଡ଼ିକର ଅବସ୍ଥିତି ଅତି ସହଜରେ ଜଣାଯାଏ। ଖାଲି ଆଖିରେ ନ ଦେଖିଲେ ଗିଗାର କାଉଣ୍ଟାର (Geiger-counter) ନାମକ ଯନ୍ତ୍ରର ସାହାଯ୍ୟ ନେବାକୁ ହୁଏ । ରେଡ଼ିଓ ଆଇସୋଟୋପ୍ ଗୁଡ଼ିକ ସବୁବେଳେ ମୌଳିକ ପଦାର୍ଥ ଆଡ଼କୁ ଆକୃଷ୍ଟ ହୁଅନ୍ତି । ଆମ ଦେହ ମଧ୍ୟରେ ଯଦି ସାମାନ୍ୟ ରେଡ଼ିଓ-ସୋଡ଼ିୟମ ପ୍ରବେଶ କରାଯାଏ, ତାହାହେଲେ ଦେହ ମଧ୍ୟରେ ଯେଉଁ ଯେଉଁ ସ୍ଥାନରେ ସୋଡ଼ିଅମ୍ ରହିଛି ସେହି ସ୍ଥାନଗୁଡ଼ିକ ଏହା ବୁଲି ଆସିବ । ଗିଗାର କାଉଣ୍ଟାର ସାହାଯ୍ୟରେ ତାର ଗତିପଥ ଆମେ ଦେଖି ପାରିବା । ଫଳରେ ଆମ ଦେହରେ କେଉଁ କେଉଁ ଅଂଶରେ ସୋଡ଼ିଅମ ଅଛି ଜଣା ପଡ଼ିବ । ଚିକିତ୍ସା ଏବଂ କୃଷି କ୍ଷେତ୍ରରେ ଏହିପରି ପ୍ରକ୍ରିୟାର ବ୍ୟାପକ ବ୍ୟବହାର କରାଯାଉଛି ।

ଆମ ଦେହରେ ରକ୍ତର ବିଶୃଙ୍ଖଳା ଘଟିଲେ ଡେକ୍‌ସଟ୍ରାନ୍ (Dextran) ନାମକ ଔଷଧ ଦିଆଯାଏ । ଏହା ଚିନି ଜାତୀୟ ହୋଇଥିବାରୁ ଏଥିରେ ଅଙ୍ଗାର (Carbon) ଅଂଶ ବେଶୀ ଥାଏ । ପରୀକ୍ଷା ଦ୍ୱାରା ଜଣାଯାଏ ଯେ ଡେକ୍‌ସଟ୍ରାନର କେବଳ ଶତକଡ଼ା ୬୫ ଭାଗ କାର୍ଯ୍ୟକାରୀ ହୁଏ । ଅବଶିଷ୍ଟ ୩୫ ଭାଗ କୁଆଡ଼େ ଯାଏ, ଜଣା ପଡ଼େନାହିଁ । ବହୁ ଗବେଷଣା କରି ମଧ୍ୟ ଏହାର କୌଣସି କାରଣ ଜଣା ପଡୁ ନ ଥିଲା । ଶେଷରେ ରେଡିଓ-କାର୍ବନ୍‌ର ସାହାଯ୍ୟ ନେବାକୁ ହେଲା । ରେଡ଼ିଓ-କାର୍ବନ୍ ଆମ ହୃଦ୍-ଯନ୍ତ୍ରରୁ ନାସିକା-ରନ୍ଧ୍ର ପର୍ଯ୍ୟନ୍ତ ଗତିକଲା । ଫଳରେ ଜଣାଗଲା ଉକ୍ତ ୩୫ ଭାଗ ଔଷଧ ଅଙ୍ଗାରକାମ୍ଳ ରୂପରେ ଆମ ପ୍ରଶ୍ୱାସରେ ଚାଲିଯାଏ ।

ଭିଟାମିନ୍, ଖଣିଜ ପଦାର୍ଥ, ଶର୍କରା, ଅମ୍ଳରସ, ଔଷଧ ପ୍ରଭୃତି ଆମ ଦେହ ମଧ୍ୟରେ କେଉଁଠାକୁ ଯାଏ, କିପରି କାର୍ଯ୍ୟକରେ ଏବଂ କିପରି ଭାବରେ ନିୟୋଜିତ ହୁଏ, ଏ ସମସ୍ତ ବିଷୟ ରେଡିଓ ଆଇସୋଟୋପ୍ ସାହାଯ୍ୟରେ ସ୍ପଷ୍ଟ ଜଣା ପଡ଼େ ।

ଆମ ରକ୍ତର ଲୋହିତ କଣାଗୁଡ଼ିକରେ ଲୌହ ଅଂଶ ରହିଛି । ଯଦି ରକ୍ତରେ କିଛି ରେଡ଼ିଓ-ଆଇରନ୍ (ଆଇରନ୍-ଲୁହା) ଦିଆଯାଏ, ତା ହେଲେ ଏହା ସର୍ବଦା ଲୋହିତ କଣିକା ସହିତ ଗତି କରିବ ଏବଂ ଲୋହିତ କଣିକା-ଗୁଡ଼ିକର ସମସ୍ତ ପ୍ରକ୍ରିୟା ଜଣା ପଡ଼ିବ ।

ଶୋଇଥିବା ଅବସ୍ଥାରେ ଅନେକ ସମୟରେ ଆମ ପାଦ ନିକଟରେ ରକ୍ତର ଗତି ଶିଥିଳ ହୋଇଯାଏ ଏବଂ ଫଳରେ

ରକ୍ତ ଜମାଟ ବାନ୍ଧି ଗୋଡ଼ ଝିମ୍ ଝିମ୍ କରେ । ରେଡ଼ିଓ-ସୋଡିଅମ୍ ଇଂଜେକ୍ସନ୍ ଦେଲେ କେଉଁ ଅଂଶରେ ରକ୍ତ ଜମାଟ ବାନ୍ଧିଛି, କାଉଣ୍ଟରର ସାହାଯ୍ୟରେ ସଙ୍ଗେ ସଙ୍ଗେ ଜଣା ପଡ଼ିବ ।

କୃଷି କ୍ଷେତ୍ରରେ ମଧ୍ୟ ରେଡ଼ିଓ-ଆଇସୋଟୋପ୍‌ର ବହୁଳ ବ୍ୟବହାର ଚାଲିଛି ।

ପୂର୍ବେ ଧାନ୍ୟ ଫସଲ ଚାଷୀମାନେ ସାର ହିସାବରେ ଅନେକ ପ୍ରକାର ସୁପାର ଫସ୍‌ଫେଟ୍ କ୍ଷେତରେ ପକାଉ ଥିଲେ । ରେଡିଓ ଫସ୍‌ଫରସ ଦ୍ୱାରା ପରୀକ୍ଷା କରି ଜଣାଗଲା ଯେ କେତେକ ଫସ୍‌ଫେଟ ଧାନ୍ୟ ଫସଲ ଗଛ ଆଦୌ ଗ୍ରହଣ କରେ ନାହିଁ । ଏହାଦ୍ୱାରା ବହୁ ଅଯଥା ବ୍ୟୟରୁ ଚାଷୀମାନେ ରକ୍ଷା ପାଇଲେ ।

ଫଳଫଳିବା ଗଛ ଗୁଡ଼ିକ କେବଳ ଛୋଟ ଅବସ୍ଥାରେ ସାରରୁ ଫସ୍‌ଫରସ୍ ଗ୍ରହଣ କରନ୍ତି । ଗଛ ବଡ଼ହେଲେ ମାଟିରୁ ଫସ୍‌ଫରସ୍ ଗ୍ରହଣ କରେ । ସୁତରାଂ ଗଛ ବଡ଼ ହେଲା ପରେ ଅଯଥା ସାର ଦେଇ ଲାଭ ନାହିଁ । ଏ ତଥ୍ୟ ମଧ୍ୟ ରେଡ଼ିଓ-ଫସ୍‌ଫରସ୍ ଦ୍ୱାରା ଜଣା ଯାଉଛି ।

ବ୍ୟବସାୟ କ୍ଷେତ୍ରରେ ମଧ୍ୟ ରେଡିଓ-ଆଇସୋଟୋପର ସାହାଯ୍ୟ କିଛି କମ୍ ନୁହେଁ । କାଗଜ କଳରେ ଯେତେବେଳେ କାଗଜ ତିଆରି ହୋଇ ବାହାରୁ ଥାଏ, କଳ ବନ୍ଦ ନ କଲେ ସେ କାଗଜର ମୋଟାଇ ମାପିବା କଷ୍ଟକର । ଆଜିକାଲି କିନ୍ତୁ ରେଡ଼ିଓ-ଆଇସୋଟୋପ୍ ସାହାଯ୍ୟରେ ଏହା କରାଯାଇ ପାରୁଛି । ଘୂରୁଥିବା କାଗଜ ତଳେ ଏକ ଧାତୁର ଆଇସୋଟୋପ ରଖାଯାଏ ଏବଂ ଠିକ୍ କାଗଜ ଉପରେ ଏକ ଗିଗାର କାଉଣ୍ଟାର ଥାଏ । କାଗଜର ମୋଟାଇ ବଢ଼ିଲେ କାଉଣ୍ଟାରର ଗତି ବଢ଼ିଯାଏ । ଏହିପରି ଭାବରେ କଳରୁ ବାହାରୁଥିବା ବେଳେ ରବର, ଲିନୋଲିୟମ୍, ପ୍ଲାଷ୍ଟିକ୍ ଏବଂ ଟିଣ ଗୃଦରର ମୋଟାଇ ମପା ଯାଇ ପାରେ ।

ମେସିନ୍ ମଧ୍ୟରେ ଘୂରୁଥିବା ଚକ ଗୁଡ଼ିକର ଘର୍ଷଣ-ଜନିତ ଅନେକ କ୍ଷୟ ଘଟି ଥାଏ । ଏହି କ୍ଷୟ କମିଯିବା ପାଇଁ ବିଭିନ୍ନ ପ୍ରକାର ତେଲ ବ୍ୟବହାର କରାଯାଏ । କେଉଁ ତେଲ ବ୍ୟବହାର କଲେ କ୍ଷୟ ସବୁଠାରୁ କମ୍ ହେବ, ଏହା ଜାଣିବାକୁ ହେଲେ ରେଡ଼ିଓ-ଆଇସୋଟୋପ୍ ବ୍ୟବହାର କରାଯାଇ ପାରେ । ଯଦି ଚକ ଲୁହାରେ ତିଆରି ହୋଇଥାଏ, ତେବେ ରେଡିଓ-ଆଇରନ୍ ବ୍ୟବହାର କଲେ କେତେ ଲୁହା କ୍ଷୟ ହେଉଛି ଜଣା ପଡ଼ିବ । ଏହି ପରି ପ୍ରତ୍ୟେକ ତେଲ ବ୍ୟବହାର କରି ଉକ୍ତ ପରୀକ୍ଷା ଦ୍ୱାରା କେଉଁ ତେଲ ସବୁଠାରୁ ବେଶୀ କାର୍ଯ୍ୟକାରୀ ଜଣା ପଡ଼ିବ । ଅଣବିକ-ପ୍ରକ୍ରିୟାକୁ ଜନ କଲ୍ୟାଣରେ ନିୟୋଜିତ କରିବା ପଥରେ ରେଡିଓ-ଆଇସୋଟୋପ୍‌କୁ ପ୍ରଥମ ସୋପାନ କୁହା ଯାଇ ପାରେ । ରେଡିଓ-ଆଇସୋଟୋପ୍‌ର ବ୍ୟବହାର ବଢିଲେ X-ray ବା ରଞ୍ଜନ୍ ରଶ୍ମିର ମହତ୍ତ୍ୱ ଚିକିତ୍ସା ଜଗତରେ ଆଉ ରହିବ ନାହିଁ । କ୍ଷୁଦ୍ରାଦପି କ୍ଷୁଦ୍ର ପରମାଣୁରେ ଯେ ଅସୀମ ଶକ୍ତି ରହିଛି, ରେଡ଼ିଓ-ଆଇସୋଟୋପ୍ ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

# ରେଡିଓ ଟ୍ରାନ୍ସମିଟାର୍

ଶ୍ରୀ ବିଭୂତିଭୂଷଣ ମହାନ୍ତି, ଏମ୍. ଏସ୍‌ସି.

ପ୍ରଫେସର ମାକ୍ସୱେଲ୍ ଓ ପ୍ରଫେସର ହର୍ଜ ପଦାର୍ଥ ଶାସ୍ତ୍ର ଓ ଗଣିତ ଶାସ୍ତ୍ରର ଗବେଷଣା ଦ୍ୱାରା ବେତାର ତରଙ୍ଗ ସମ୍ପର୍କରେ ତଥ୍ୟ ଆବିଷ୍କାର କରିଥିଲେ । ଏହି ତଥ୍ୟ ବେତାର ବିଜ୍ଞାନର ମୂଳଭିତ୍ତି ସ୍ଥାପନ କରିଥିଲା । କେବଳ ଗବେଷଣା କରି ତଥ୍ୟ ଆବିଷ୍କାର କଲେ ବୈଜ୍ଞାନିକ ଶାନ୍ତି ପାଏନାହିଁ । କିପରି ସେହି ଆବିଷ୍କୃତ ତଥ୍ୟ ସବୁ ଜଗତର କଲ୍ୟାଣ ସାଧନରେ ଲାଗିପାରିବ ସେଥିଲାଗି ବୈଜ୍ଞାନିକର ଚିନ୍ତାଧାରା ଆନ୍ଦୋଳିତ ହୁଏ । ଇଂରାଜୀରେ ଗୋଟିଏ କଥା ଅଛି "Necessity is the mother of invention", ଅର୍ଥାତ୍ ଆବଶ୍ୟକତା ଉଦ୍ଭାବନର ଜନ୍ମଦାତା । ସମାଜ ଓ ଦେଶର ଆବଶ୍ୟକତା ଉପଲବ୍ଧି କରି ବୈଜ୍ଞାନିକ ତାର ନିର୍ଜନ ବିଜ୍ଞାନାଗାରରେ କରିବସେ ସାଧନା — ତାର ସାଧନାର ଫଳରୂପେ ଜଗତ ଆଗରେ ଆତ୍ମପ୍ରକାଶ କରେ ନୂଆ ନୂଆ ଧରଣର ଯନ୍ତ୍ରପାତି, ମାନବ ସମାଜର ସୁଖ ସ୍ୱାଚ୍ଛନ୍ଦ୍ୟ ଲାଗି । ଗତ ମହାଯୁଦ୍ଧ ବେଳେ ବେତାର ବିଜ୍ଞାନ ସମ୍ବନ୍ଧୀୟ ଅନେକ ନୂତନ ଆବିଷ୍କାର ହୋଇଛି । ରେଡ଼ାର୍,

ଅର୍ଣ୍ଣି ଏସ୍ପୋର କାଫ୍ଟ ଗନ୍ ଇତ୍ୟାଦି ସେହି ମହାପୁରୁଷର ଦାନ । ପ୍ରଫେସର ହର୍କଙ୍କ ବେତାର ତଥ୍ୟରେ ଅନୁପ୍ରାଣିତ ହୋଇ ପୃଥିବୀର ତତ୍କାଳୀନ ଇଂଜିନିୟର ଓ ବୈଜ୍ଞାନିକ-ମାନେ ବେତାର ତରଙ୍ଗ ଉତ୍ପନ୍ନ କରିବାର ଚେଷ୍ଟାରେ ଲାଗିଥିଲେ । ଇଟାଲିର ମାର୍କୋନିଙ୍କ ନାମ ଏମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ ।

ଗୋଟିଏ ରେଡ଼ିଓ ଯନ୍ତ୍ର ଖୋଲିଲେ ତା ମଧ୍ୟରେ କେତେଗୁଡ଼ିଏ ଭଲ୍‌ଭ୍ ଥିବାର ଦେଖାଯିବ । ଏଗୁଡ଼ିକ ସାଧାରଣ ଇଲେକ୍‌ଟ୍ରିକ୍ ବଲ୍‌ବ୍ ଭଳି ଦେଖାଗଲେ ମଧ୍ୟ ଏହାର ତିଆରି ଭିନ୍ନ ଧରଣର । ୧୯୦୪ ମସିହାରେ ଜେ. ଏ. ଫ୍ଲେମିଂ, ଏହି ଭଲ୍‌ଭ୍ ଆବିଷ୍କାର କରିଥିଲେ । ୧୯୦୭ ମସିହାରେ ଡକ୍‌ଟର୍ ଲି. ଡି. ଫରେଷ୍ଟ୍ ଆହୁରି ଗୋଟିଏ ଉନ୍ନତ ଧରଣର ଭଲ୍‌ଭ୍ ତିଆରି କରିଥିଲେ । ଆଜିକାଲି ଏହି ଭଲ୍‌ଭ୍ ସବୁ ବାହାରୁ ଅଣାଯାଏ । ଭାରତରେ ବାଙ୍ଗାଲୋରଠାରେ ଗୋଟିଏ ଭଲ୍‌ଭ୍ ତିଆରି କାରଖାନା, ଭାରତ ସରକାରଙ୍କ ଉଦ୍ୟମରେ ସ୍ଥାପନ କରାଯାଇଛି । ରେଡ଼ିଓ ଭଲ୍‌ଭ୍ ଆଧୁନିକ ରେଡ଼ିଓ ଟ୍ରାନ୍ସମିଟାରର ଉନ୍ନତିର ପଥପ୍ରଦର୍ଶକ । ପ୍ରତ୍ୟେକ ରେଡ଼ିଓ ଟ୍ରାନ୍ସମିଟାର ଏହିସବୁ ଭଲ୍‌ଭ୍‌ରେ ତିଆରି । ବ୍ୟବହାର ଅନୁଯାୟୀ ଟ୍ରାନ୍‌ସମିଟାର୍‌ର ଆକାର ଓ ଶକ୍ତି ନିର୍ଦ୍ଧାରିତ ହୁଏ । ଗୋଟିଏ ରେଡ଼ିଓ ଟ୍ରାନ୍‌ସମିଟାର ତିଆରି କରିବାକୁ ହେଲେ ପ୍ରଥମେ ଏହା କେତେ ଶକ୍ତିଶାଳୀ ହେବ ଓ ଏହାର ବ୍ୟବହାର କିପରି ହେବ ଏହା ଦେଖାଯାଏ ଏବଂ ସେହି ଅନୁଯାୟୀ ଉପଯୁକ୍ତ ଭଲ୍‌ଭ୍ ଓ ଅନ୍ୟାନ୍ୟ ଯନ୍ତ୍ରପାତିର ଆବଶ୍ୟକ ହୁଏ । ପୋଲିସ ଖବର ଯୋଗାଯୋଗ, ମିଲିଟାରି ସମ୍ବାଦ ସରବରାହ, ଉଡ଼ାଜାହାଜ ଓ ଜାହାଜର ଖବର ଆଦାନ ପ୍ରଦାନ, ରେଡ଼ିଓ ଟେଲିଫୋନ, ରେଡ଼ିଓ ଟେଲିଗ୍ରାଫ୍, ଟେଲିଭିଜନ, ଫାସ୍‌ମିମାଇଲ, ରେଡାର୍ ଓ ଦେଶରେ ବକ୍ତୃତା, ଖବର ସଙ୍ଗୀତର ପ୍ରଚାର ଇତ୍ୟାଦିପାଇଁ ଭିନ୍ନ ଭିନ୍ନ ଟ୍ରାନ୍‌ସମିଟାର ଦରକାର ହୋଇଥାଏ । ରେଡ଼ିଓ ସାହାଯ୍ୟରେ ଫଟୋ ଓ ଛବି ପ୍ରେରଣର ବ୍ୟବସ୍ଥାକୁ ରେଡ଼ିଓ ଫାସ୍‌ମିମାଇଲ କୁହାଯାଏ । କିନ୍ତୁ ସବୁ ଟ୍ରାନ୍‌ସମିଟାରର ମୂଳ ଉଦ୍ଦେଶ୍ୟ ହେଲା ଗୋଟିଏ ନିର୍ଦ୍ଧାରିତ ଫ୍ରିକ୍ୱେନ୍‌ସିର ବେତାର ତରଙ୍ଗ ଉତ୍ପନ୍ନ କରିବା । ଏହି ତରଙ୍ଗକୁ କ୍ୟାରିଅର୍ ଉଏଭ୍ ବା ବହନକାରୀ ତରଙ୍ଗ କୁହାଯାଏ । ପ୍ରତ୍ୟେକ ଟ୍ରାନ୍ସମିଟାରରେ ଗୋଟିଏ ମାଷ୍ଟର୍ ଅସ୍‌ସିଲେଟର ଥାଏ । ଏହା ନିର୍ଦ୍ଦିଷ୍ଟ ଲମ୍ବ ଓ ଫ୍ରିକ୍ୱେନ୍‌ସିର ବହନକାରୀ ତରଙ୍ଗ ଉତ୍ପନ୍ନ କରେ । ଆକାଶ ମାର୍ଗରେ ଗତି କଲାବେଳେ ଯେପରି ଏହି କ୍ୟାରିଅର ବା ବହନକାରୀ ତରଙ୍ଗ ସବୁ ନିଜ ନିଜର ସ୍ୱତନ୍ତ୍ରତା ନ ହରାନ୍ତି ଏଥିପାଇଁ ସବୁବେଳେ ଚେଷ୍ଟା କରାହୁଏ । ରେଡ଼ିଓ ଟ୍ରାନ୍‌ସ୍‌ମିଟାର୍‌ର ଅସ୍‌ସିଲେଟର୍ ନିଜର ଫ୍ରିକ୍ୱେନ୍‌ସି ସବୁବେଳେ ଠିକ୍ ରଖେ ଯାହା ଫଳରେ କି କ୍ୟାରିଅର୍ ତରଙ୍ଗ ମଧ୍ୟ ସବୁବେଳେ ନିଜର ଲମ୍ବ ଓ ଫ୍ରିକ୍ୱେନ୍‌ସିକୁ ଠିକ୍ ରଖିଥାଏ । ଏଥିଲାଗି ଆଜିକାଲି ଅସ୍‌ସିଲେଟରରେ କ୍ୱାର୍ଜ ନାମକ ଗୋଟିଏ କ୍ରିଷ୍ଟାଲ୍ ଦିଆଯାଇଛି ଯାହାଦ୍ୱାରା ଟ୍ରାନ୍‌ସମିଟାର୍ ସବୁବେଳେ ଗୋଟିଏ ନିର୍ଦ୍ଧାରିତ ଫ୍ରିକ୍ୱେନ୍‌ସିରେ କାର୍ଯ୍ୟ କରେ । ଅବଶ୍ୟ ଏଥିରେ ଅଳ୍ପ ମାତ୍ରାରେ ସାମୟିକ ବ୍ୟତିକ୍ରମ ଘଟେ, କିନ୍ତୁ ଇଂଜିନିଅରମାନେ ଏଥିପ୍ରତି ସବୁବେଳେ ସଚେତ ଓ ଜାଗ୍ରତ ଥାଆନ୍ତି ।

ବର୍ତ୍ତମାନ ଭାରତରେ ଏହି କ୍ରିଷ୍ଟାଲ ସମ୍ବନ୍ଧରେ ଗବେଷଣା ଚାଲିଛି । ଭାରତର ସିଭିଲ ଆଭିଏସନ ଡିପାର୍ଟମେଣ୍ଟ ଦିଲ୍ଲୀରେ ଏହାର ଗବେଷଣା ଫଳରେ ଖୁବ୍ ଭଲ ଧରଣର କ୍ରିଷ୍ଟାଲ ପ୍ରସ୍ତୁତ କରି ପାରିଛନ୍ତି ଏବଂ ଏହା ଅଲ୍ ଇଣ୍ଡିଆ ରେଡ଼ିଓ, ପୋଲିସ୍ ଓ ମିଲିଟାରି ବିଭାଗରେ ଥିବା ବିଭିନ୍ନ ଟ୍ରାନ୍‌ସମିଟାରରେ ବ୍ୟବହାର କରା ଯାଉଛି । ପୂର୍ବରୁ ଏଗୁଡ଼ିକ ବିଦେଶରୁ ଆସୁଥିଲା । ଏହି ଅସ୍‌ସିଲେଟର ଉତ୍ପନ୍ନ ହେଉଥିବା କ୍ୟାରିଅର ତରଙ୍ଗକୁ ଆମ୍‌ପ୍ଲିଫାୟାର ସାହାଯ୍ୟରେ ଆବଶ୍ୟକ ଅନୁଯାୟୀ ବଢ଼ାଇ ଦିଆଯାଏ । ରେଡାର, ଟେଲିଭିଜନ, ରେଡ଼ିଓ ଟେଲିଗ୍ରାଫ୍ ଓ ଫାସ୍‌ମିମାଇଲକୁ ଛାଡ଼ିଦେଲେ ଆଉ ସବୁ କ୍ଷେତ୍ରରେ ଆମକୁ ଶବ୍ଦ ପଠାଇବାକୁ ହୁଏ ରେଡ଼ିଓ ଟ୍ରାନ୍‌ସମିଟାର ସାହାଯ୍ୟରେ । କିନ୍ତୁ ଟେଲିଭିଜନ ଓ ଫାସ୍‌ମିମାଇଲରେ ଗୋଟିଏ ଦୃଶ୍ୟର ପ୍ରେରଣା ହୁଏ । ଆଖିରେ ଆମେ ଯାହା ଦେଖୁ ତାହା କେବଳ ଆଲୋକ ଓ ଛାୟାର ସମଷ୍ଟି ମାତ୍ର । ଗୋଟିଏ ଦୃଶ୍ୟ ଦେଖିଲେ ଆମର ଆଖି ଅଭ୍ୟନ୍ତରରେ ଥିବା ରେଟିନା ଏହି ଆଲୋକ ଓ ଛାୟାର ତାରତମ୍ୟକୁ ଅନୁଭବ କରିପାରେ ଏବଂ ସ୍ନାୟୁଦ୍ୱାରା ମସ୍ତିଷ୍କକୁ ଏହି ଅନୁଭୂତି ମଧ୍ୟ ପଠାଏ । ଫଳରେ ଆମେ ଦୃଶ୍ୟ ବା ଛବିକୁ ଠିକ୍ ଭାବେ ଦେଖିପାରୁ । ଗୋଟିଏ ଛବି ବା ଦୃଶ୍ୟକୁ ବେତାର ସାହାଯ୍ୟରେ ଦୂର ଦେଶ ବିଦେଶକୁ ପଠାଇବାକୁ ହେଲେ ସେହି ଛବି ବା ଦୃଶ୍ୟରେ ଥିବା ଆଲୋକ ଓ ଛାୟାର ତାରତମ୍ୟକୁ ପଠାଇବା ଯନ୍ତ୍ର ଓ ପାଇବା ଯନ୍ତ୍ର ଯେମିତି

ଗ୍ରହଣ କରିପାରନ୍ତି ତାର ଯତ୍ନ ନିଆଯାଏ । ଶବ୍ଦକୁ ମାଇକ୍ରୋଫୋନ୍ ସାହାଯ୍ୟରେ ବୈଦ୍ୟୁତିକ ତରଙ୍ଗରେ ପରିଣତ କରାହୁଏ । ଆଲୋକକୁ ମଧ୍ୟ ଗୋଟିଏ ଯନ୍ତ୍ର ସାହାଯ୍ୟରେ ବୈଦ୍ୟୁତିକ ଶକ୍ତିରେ ପରିଣତ କରାହୁଏ । ଆଲୋକ ଓ ଛାୟାର ତାରତମ୍ୟ ସେହି ଯନ୍ତ୍ର ସାହାଯ୍ୟରେ ବୈଦ୍ୟୁତିକ ତରଙ୍ଗରେ ପରିଣତ ହୁଏ ଏବଂ ଏହି ତରଙ୍ଗର କ୍ରେଷ୍ଟ୍ (ଚୂଡ଼ା) ଓ ଟ୍ରଫ୍ (ଭୂମି) ଠିକ୍ ଆଲୋକ ଓ ଛାୟାର ତାରତମ୍ୟ ଅନୁଯାୟୀ ହୋଇଥାଏ । ଏହି ଯନ୍ତ୍ରକୁ ଫଟୋ ଇଲେକ୍‌ଟ୍ରିକ ସେଲ କୁହାଯାଏ । କିନ୍ତୁ ଟେଲିଭିଜନରେ ଯେଉଁ ଯନ୍ତ୍ର ବ୍ୟବହାର କରାହୁଏ ତାହାର ନାମ ଆଇକୋନୋ ସ୍କୋପ; ରେଡ଼ିଓର ସାହାଯ୍ୟରେ କୌଣସି ଶକ୍ତି ରୂପାନ୍ତରିତ ହୋଇ ପଠାଯାଏ ନାହିଁ । ଏହା ସାହାଯ୍ୟରେ ଖୁବ୍ ଉଚ୍ଚ ଶକ୍ତି-ସମ୍ପନ୍ନ ବୈଦ୍ୟୁତିକ ତରଙ୍ଗ ପଠାହୁଏ । ଏହି ତରଙ୍ଗର ଲମ୍ବ ଖୁବ ଛୋଟ । ମାଇକ୍ରୋଫୋନ, ଆଇକୋନୋସ୍କୋପ, ବା ରେଡ଼ିଓ ଟେଲିଫୋନର କହିବା ଯନ୍ତ୍ରରୁ ଆସୁଥିବା ବୈଦ୍ୟୁତିକ ତରଙ୍ଗକୁ ଇଚ୍ଛାନୁଯାୟୀ ବଢାଇ ଦିଆ ଯାଇ ଟ୍ରାନ୍ସମିଟରର ଅସ୍‌ସିଲେଟରରୁ ଉତ୍ପନ୍ନ ହୋଇଥିବା କ୍ୟାରିଅର ତରଙ୍ଗ ସଙ୍ଗେ ମିଶାଇ ଦିଆଯିବାକୁ ମଡ୍ୟୁଲେଟର ନାମକ ଗୋଟିଏ ଯନ୍ତ୍ର ନିକଟକୁ ଅଣାହୁଏ । ଏହି ଯନ୍ତ୍ର କ୍ୟାରିଅର ତରଙ୍ଗ ଏବଂ ମାଇକ୍ରୋଫୋନ ପ୍ରଭୃତିରୁ ଆସୁଥିବା ବୈଦ୍ୟୁତିକ ତରଙ୍ଗକୁ ଗୋଟିଏ ନିର୍ଦ୍ଦିଷ୍ଟ ଉପାୟରେ ମିଶାଇ ଦିଏ । ଏହି ପ୍ରକ୍ରିୟାକୁ ମଡ୍ୟୁଲେସନ୍ କୁହାଯାଏ । ଏହି ଯନ୍ତ୍ରନିକଟରୁ ସେହି ମିଶ୍ରିତ ବା ମଡ୍ୟୁଲେଟେଡ୍ ତରଙ୍ଗକୁ ବଢ଼ାଇ ଦିଆଯାଇ ଏରିୟାଲ ନିକଟକୁ ପଠାଇ ଦିଆଯାଏ ଏବଂ ଏରିୟାଲ ଆକାଶମାର୍ଗରେ ସେହି ତରଙ୍ଗକୁ ଛାଡ଼ିଦିଏ । ବିଭିନ୍ନ ଟ୍ରାନ୍ସମିଟର ପାଇଁ ବିଭିନ୍ନ ଧରଣର ଏରିୟାଲ୍ ନିଯୁକ୍ତ କରାଯାଏ । ଏରିୟାଲ ଭଲ ନ ହେଲେ ବେତାର ତରଙ୍ଗ ଭଲ ଭାବେ ତାର କାର୍ଯ୍ୟ ସଂପାଦନ କରି ପାରେ ନାହିଁ ।

ପ୍ରତ୍ୟେକ ଟ୍ରାନ୍ସମିଟର୍‌ର ସ୍ଥାପନପାଇଁ ଗୋଟିଏ ସ୍ଥାନ ନିରୂପଣ କରିବାକୁ ହୁଏ । ଯେ କୌଣସି ସ୍ଥାନରେ ଗୋଟିଏ ଟ୍ରାନ୍ସମିଟର ସ୍ଥାପିତ ହୋଇ ପାରିବ ନାହିଁ । ସ୍ଥାନର ମାଟିକୁ ପରୀକ୍ଷା କରାଯାଏ ଏବଂ ନିର୍ଦ୍ଦିଷ୍ଟ ଧରଣର ଏରିୟାଲ ବସାଇବାକୁ ହେଲେ ମାଟିର ଯେଉଁ ଗୁଣ ଥିବା ଦରକାର, ସେ ଗୁଣ ଥିଲେ ସ୍ଥାନଟିକୁ ଅନୁମୋଦନ କରାଯାଏ । ଭାରତରେ ଯେ କୌଣସି ସ୍ଥାନରେ କୌଣସି ଟ୍ରାନ୍ସମିଟର ସ୍ଥାପନ କରିବାକୁ ହେଲେ ଅଲ୍ ଇଣ୍ଡିଆ ରେଡିଓର କର୍ତ୍ତୃପକ୍ଷ ଭାରତର 'ସର୍ଭେ ଅଫ୍ ଇଣ୍ଡିଆ'ର କର୍ତ୍ତୃପକ୍ଷଙ୍କର ଉପଦେଶ ଲୋଡ଼ନ୍ତି ଏବଂ ତାଙ୍କରି ଉପଦେଶ ଅନୁଯାୟୀ ସ୍ଥାନର ଉପଯୋଗିତା ସ୍ଥିର କରାଯାଏ । ସାଧାରଣତଃ ଟ୍ରାନ୍ସ୍‌ମିଟର ସବୁ ସହରଠାରୁ ଦୂରରେ ହୋଇଥାଏ; କାରଣ ସହରରେ ଥିବା ବୈଦ୍ୟୁତିକ କାରଖାନା ପ୍ରଭୃତିରୁ ଯେଉଁ କ୍ଷୀଣ ବୈଦ୍ୟୁତିକ ତରଙ୍ଗ ପ୍ରକାଶ ପାଏ ତାହା ଟ୍ରାନ୍ସ୍‌ମିଟର୍‌ର କାର୍ଯ୍ୟକ୍ରମରେ ଅସୁବିଧା ଜନ୍ମାଏ । ଯେଉଁଠାରେ ଷ୍ଟୁଡ଼ିଓ ଥାଏ ସେଠାରୁ ଟ୍ରାନ୍ସମିଟର ନିକଟକୁ ବୈଦ୍ୟୁତିକ ତାର ସଂଯୋଗ କରି ହୋଇଥାଏ । କଟକ ରେଡ଼ିଓ ଷ୍ଟେସନ୍‌ର ଟ୍ରାନ୍ସ୍‌ମିଟର କଲ୍ଲା ପଡ଼ିଆରେ ଏବଂ ଏହା ଷ୍ଟୁଡ଼ିଓଠାରୁ ଦୂର । ପ୍ରତ୍ୟେକ ରେଡ଼ିଓ ଷ୍ଟେସନରେ ଅନେକଗୁଡ଼ିଏ କୋଠରି ଥାଏ । ଏହି କୋଠରି ସବୁକୁ ଷ୍ଟୁଡିଓ କୁହାଯାଏ । ଷ୍ଟୁଡିଓ ସବୁ ଏପରି ଭାବେ ତିଆରି ହୋଇଥାଏ ଯେ ଏହା ମଧ୍ୟରେ ରହି କଥାବାର୍ତ୍ତା କଲେ ବା ଗୀତ ଗାଇଲେ ପ୍ରତିଧ୍ୱନି ହୁଏ ନାହିଁ । ଏଥିପାଇଁ ବିଶେଷ ଯତ୍ନ ନିଆହୁଏ । ସମୟେ ସମୟେ ଗୀତ ଗାଇବା ଷ୍ଟୁଡିଓରେ ସାମାନ୍ୟ ପ୍ରତିଧ୍ୱନି ହେବାର ସୁବିଧା ରଖାଯାଇଥାଏ ଯାହା ଫଳରେ ସଙ୍ଗୀତର ମଧୁରତା ବୃଦ୍ଧିପାଏ । ପ୍ରତି ଷ୍ଟୁଡ଼ିଓରେ ମାଇକ୍ରୋଫୋନ ଥାଏ । ବକ୍ତା ବା ଗାୟକ ଏହି ମାଇକ୍ରୋଫୋନ୍ ନିକଟରେ ସେମାନଙ୍କର ବକ୍ତୃତା ବା ସଙ୍ଗୀତ ପରିବେଷଣ କରନ୍ତି । ଏହା ଛଡ଼ା ଆହୁରି କେତେଗୁଡ଼ିଏ ଏଫେକ୍‌ଟ୍ ଷ୍ଟୁଡ଼ିଓ ଥାଏ । ରେଡିଓରେ କୌଣସି ଡ୍ରାମା ଶୁଣିଲାବେଳେ ଆମ୍ଭେମାନେ ରେଲଗାଡ଼ିର ହୁଇସ୍‌ଲ୍, ଛୋଟ ପିଲାର କ୍ରନ୍ଦନ ସ୍ୱର, ଝରଣାର କଳ କଳ ନାଦ ଓ ପକ୍ଷୀର କାକଳୀ ଇତ୍ୟାଦି ଶୁଣିପାରୁ । ଏହି ଶବ୍ଦ ସବୁ ଅନ୍ୟ ସମୟରେ ରେକର୍ଡ଼ ହୋଇ ଏହି ଏଫେକ୍‌ଟ୍ ଷ୍ଟୁଡିଓରେ ରଖାଯାଇଥାଏ । ଡ୍ରାମାରେ ଯେଉଁମାନେ ଅଂଶ ଗ୍ରହଣ କରନ୍ତି, ସେମାନେ ଅନ୍ୟ ଏକ ଷ୍ଟୁଡ଼ିଓରେ ଥାନ୍ତି । ଷ୍ଟେସନ୍‌ର ସବୁ ଷ୍ଟୁଡ଼ିଓରେ ଜଣେ ଜଣେ ଇଂଜିନିଅର ଥାନ୍ତି ଏବଂ ସବୁ ଷ୍ଟୁଡିଓରୁ କେନ୍ଦ୍ର ନିୟନ୍ତ୍ରଣ କୋଠରୀ ବା କଣ୍ଟ୍ରୋଲ୍ ରୁମ୍ ସଙ୍ଗେ ତାର ସଂଯୋଗ କରାଯାଇଥାଏ । ଏହି କଣ୍ଟ୍ରୋଲ୍ ରୁମ୍‌ରେ ମଧ୍ୟ ଇଂଜିନିଅର ଥାନ୍ତି ଏବଂ ତାଙ୍କରି ନିର୍ଦ୍ଦେଶରେ ପରି-ଚାଳିତ ହୋଇ ଏଫେକ୍‌ଟ ଷ୍ଟୁଡିଓର ଇଂଜିନିଅର ନାଟକର ଆବଶ୍ୟକ ଉପଯୋଗୀ ଠିକ୍ ସମୟରେ ସେହି ରେକର୍ଡ଼ ସବୁ ଚାଳନ୍ତି । ସଙ୍ଗେ ସଙ୍ଗେ ମଧ୍ୟ ଅନ୍ୟ ଷ୍ଟୁଡ଼ିଓରୁ ଅଂଶ

( ୨୦ ପୃଷ୍ଠା ଦେଖ )

# ଆଶ୍ଚର୍ଯ୍ୟ ଯନ୍ତ୍ର

ଶ୍ରୀ ବିପିନବିହାରୀ ମହାନ୍ତି

ତିନିଶତାବ୍ଦୀ ପୂର୍ବେ ପାସ୍କାଲ ଏକ ଗଣକ-ଯନ୍ତ୍ର ତିଆରି କରିଥିଲେ ଏବଂ ଆଜିର ଗଣକ-ଯନ୍ତ୍ର ସେହି ସୂତ୍ରରୁ ବିକଶିତ ହୋଇଛି । ଏହି ଯନ୍ତ୍ର ତିଆରି କରିବା ପରେ ପାସ୍କାଲ ଲେଖିଥିଲେ, "ଗଣକ-ଯନ୍ତ୍ର ବହୁତ ଅଂଶରେ ଜୀବନଧାରୀ ସଦୃଶ ଚିନ୍ତା କରେ କିନ୍ତୁ ଏଥିରେ ପ୍ରେରଣା ଶକ୍ତିର ଅଭାବ ଅଛି ।" ଆଜି ତିନିଶହ ବର୍ଷ ପରେ ମଧ୍ୟ ପାଶ୍ଚାତ୍ୟ ଦେଶରେ ଯେଉଁ ଗଣକ-ଯନ୍ତ୍ର ତିଆରି ହେଉଛି ତାହା ଅତି ଅଳ୍ପ ସମୟ ମଧ୍ୟରେ ବଡ଼ ବଡ଼ ଗଣନା ଓ ଅଙ୍କ ନିର୍ଭୁଲ ଭାବରେ କରି ଦେଉଛି; କିନ୍ତୁ ଏହାର ପ୍ରେରଣାଶକ୍ତି ନାହିଁ । ଏହିପରି ଯନ୍ତ୍ର ସାହାଯ୍ୟରେ ଅଳ୍ପ ସମୟ ମଧ୍ୟରେ ଅଧିକ କାର୍ଯ୍ୟ କରିବାକୁ ଇଚ୍ଛୁକ ଆଜିର ମାନବ ଅନେକ ଅଦ୍ଭୁତ ଯନ୍ତ୍ର ତିଆରି କରି ଚାଲିଛି ।

ପେଁସିଲ୍‌ଭେନିଆଁର ଷ୍ଟେସନରେ ବର୍ତ୍ତମାନ ଏପରି କବାଟ ଲଗା ଯାଇଛି ଯାହାର ବିଜୁଳି-ଆଖି ରହିଛି । ଏହା ପ୍ରହରୀ ଭଳି କାହାରି ଆସିବା ସମୟରେ କବାଟ ଖୋଲି ଦିଏ ଏବଂ ଯିବା ସମୟରେ ବନ୍ଦ କରିଦିଏ । ଏହି ପ୍ରକାର ବିଜୁଳି-ଆଖି ଏଠାକାର ବଡ଼ ବଡ଼ ମଟର ଦୋକାନରେ, ମଟରର ଯନ୍ତ୍ର ସବୁ ପରୀକ୍ଷା କରି ଭଲ ମଟର ବାଛି ଦିଏ ଏବଂ ୨୪ଟି ମେସିନ୍-ଆଖି ୨୦ ଘଣ୍ଟାରେ ୧୨୪୦ କୋଟି ମଟର ବାଛିପାରେ ।

ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟର ଜଣେ ବୈଜ୍ଞାନିକ ଏନ୍‌ଥୋନୀ ଡାୟୁସ୍ ଏପରି ଏକ ଯନ୍ତ୍ର-ମାନବ ତିଆରି କରିଛନ୍ତି ଯାହା ନିଜ ମାଲିକର ଆଦେଶରେ ଦୁର୍ଗମ ପଥରେ ବୁଲିଆସେ ଏବଂ କୌଣସି ତ୍ରୁଟି ଦେଖିଲେ ତାକୁ ସଂଶୋଧନ ମଧ୍ୟ କରିଦିଏ । ଏହାର ସ୍ମରଣ ଶକ୍ତି ଅଛି ଏବଂ ସମସ୍ତ କାର୍ଯ୍ୟକଳାପ କେବଳ ଗୋଟିଏ "ସୁଇଚ୍" ଦ୍ୱାରା ହୋଇଥାଏ । ନିଜେ ଏନ୍‌ଥୋନୀ ଡାୟୁସ୍ ଏହାକୁ ଚଲେଇ ଥାଆନ୍ତି । ଏହି ଆଶ୍ଚର୍ଯ୍ୟ ଯନ୍ତ୍ରର ତିନିଗୋଟି ଅଂଶ ଅଛି । ଗୋଟିଏ ତିନିଗୋଡିଆ ଗାଡ଼ି ଏହି ମେସିନ୍‌ର ପାଦ ଏବଂ ଏହା ବିଦ୍ୟୁତ୍ ମଟର ଦ୍ୱାରା ଚାଳିତ । ଏହାଦ୍ୱାରା ମେସିନ୍‌ଟି ଅନୁଭବ କରିପାରେ ଓ-ଏହି କାର୍ଯ୍ୟ "ଅନୁଭୂତି-ଶୀଳ ତରଙ୍ଗ" ଦ୍ୱାରା ହୋଇଥାଏ । ଦ୍ୱିତୀୟ ଅଂଶ ହେଉଛି, ୧୦ସେର ଓଜନର ଏକ ବିଦ୍ୟୁତ୍ ମସ୍ତିଷ୍କ । ଏହାଦ୍ୱାରା ସ୍ନାୟୁର କାର୍ଯ୍ୟ ମଧ୍ୟ ହୋଇଥାଏ । ଏହି ଦ୍ୱିତୀୟ ଅଂଶଟି ପ୍ରଥମ ଅଂଶ ସହିତ ଏକ ଲମ୍ବା ତାର ଦ୍ୱାରା ଜଡ଼ିତ ଏବଂ ଏହି ଅଂଶ ଯନ୍ତ୍ରର ଅନୁଭୂତ ସବୁ ମସ୍ତିଷ୍କରେ ପହଞ୍ଚାଇଦିଏ । ଏହାଛଡ଼ା ଯନ୍ତ୍ରର ଆଦେଶକୁ ବିଭିନ୍ନ ଅବୟବ ପର୍ଯ୍ୟନ୍ତ ପ୍ରେରଣ କରିଥାଏ । ତୃତୀୟ ଅଂଶଟି ହେଉଛି ପ୍ରଖର ରଶ୍ମିଯୁକ୍ତ ବିଜୁଳିଆଖି, ଯାହା ଚାରିଆଡ଼କୁ ଦେଖି ନିଜର କାର୍ଯ୍ୟ ନିଶ୍ଚିତ କରିଥାଏ । ଯେତେବେଳେ ଯନ୍ତ୍ରର ମାଲିକ ଆଦେଶ ଦିଅନ୍ତି, "ଡାହାଣବାଟେ ଯାଇ କୋଠରୀରୁ ବହିଟି ନେଇଆ" ଏହା କିଛିକ୍ଷଣ ଚିନ୍ତାକରି ସିଧା ଡାହାଣବାଟେ ବୁଲିପଡ଼େ ଏବଂ ଏହାର ଆଖି ଆଲୋକିତ ହୋଇଯାଏ । ଉକ୍ତ ଆଲୋକଦ୍ୱାରା ଯନ୍ତ୍ର-ମାନବ କୋଠରୀ ଭିତରକୁ ଯାଇ ବହିଟି ଧରି ଛିଡ଼ାହୁଏ, ପୁଣି ବାଁ ପଟେ ବୁଲି ଠିକ୍ ବାଟରେ ମାଲିକ ନିକଟକୁ ଆସେ । ଏହାର ନିର୍ମାତା କହନ୍ତି ଯେ ଏହି ଯନ୍ତ୍ର-ମାନବର ଅନେକାଂଶରେ ନିଜର ବୁଦ୍ଧି ମଧ୍ୟ ରହିଛି ଓ ଏହିପରି ଭାବରେ ଏହା ମାଲିକଙ୍କର ଆଦେଶଗୁଡ଼ିକ ପାଳନ କରି ଚାଲିଛି ।

ଇଂଲଣ୍ଡସ୍ଥ ଶେଶାୟରର ଇବନ୍ସ ପ୍ରାଣୀ-ଶାସ୍ତ୍ରୀୟ ପ୍ରୟୋଗ ଶାଳାରେ ଆର୍. ଏମ୍. ରବର୍ଟସ ବହୁତ-ଦିନରୁ "ମେସିନ୍-ଗାଈ" ତିଆରି କରିବାକୁ ଲାଗିଛନ୍ତି ଏବଂ ଅନେକାଂଶରେ ସଫଳତା ମଧ୍ୟ ଲାଭ କରିଛନ୍ତି । ଏହି "ମେସିନ୍-ଗାଈ" ପ୍ରକୃତ ଗାଈପରି ଦୁଧ ଦିଏ । ଏହି ମେସିନ୍ ୩୦ ଗେଲନ୍ ପାଣି, କିଛି ଚିନି ଓ ଏମୋନିଆ ଲବଣର ମିଶ୍ରଣରେ ତିନି ଗେଲନ ଦୁଧ ପ୍ରତିଦିନ ପ୍ରସ୍ତୁତ କରେ । ରବାର୍ଟସଙ୍କର ପ୍ରୟୋଗ ଶାଳାରେ ଥରେ ଅନେକଙ୍କ ବାଛୁରୀ ମରିଗଲେ । ପଶୁଙ୍କ ଠାରେ ଏକ ପ୍ରକାର ଜୀବାଣୁ ଥାଆନ୍ତି ଯାହାକୁ "ବେସିଲସ କୋଲି" କହନ୍ତି । ରବାର୍ଟସ ଏହି ଜୀବାଣୁଗୁଡ଼ିକ ସଂଗ୍ରହକରି ଅନ୍ୟ ବାଛୁରୀ ଦେହରେ ଛାଡ଼ି ପରୀକ୍ଷା କଲେ ଏବଂ ଏହି ଜୀବାଣୁଦ୍ୱାରା ଗାଈ ବା ବାଛୁରୀ ଅଧିକ ହୃଷ୍ଟପୁଷ୍ଟ ହେଲେ । ରବର୍ଟସ ଗବେଷଣା କରି ଏହି ଜୀବାଣୁରୁ ପ୍ରୋଟିନ ଓ ଅନ୍ୟ କେତେକ ଭିଟାମିନ ପାଇଥିଲେ । ତେଣୁ ଏହି ଜୀବାଣୁର ଚୁଲ୍ଲିରେ ଯାନ୍ତ୍ରିକ ଦୁଧ ପ୍ରସ୍ତୁତ କଲେ ।

ଆଜିକାଲି ଏକ ଆଶ୍ଚର୍ଯ୍ୟ ଯନ୍ତ୍ର ହେଉଛି "ଭାଷାନ୍ତର-ଟାଇପ ରାଇଟାର୍"। ଏହାର ନିର୍ମାଣ କର୍ତ୍ତା ଆଉନ (ଆମେରିକା) ଭାଷା ପରିଷଦର ଭାଷାଶାସ୍ତ୍ରୀ-ମାନଙ୍କ ଚେଷ୍ଟାରେ ସେଠା-କାର ଆନ୍ତର୍ଜାତୀୟ ବ୍ୟବସାୟିକ ଯନ୍ତ୍ର ନିର୍ମାଣ କର୍ପୋ-ରେସନ୍ କରିଛନ୍ତି। ବର୍ତ୍ତମାନ ଏହି ମେସିନ୍‌ର ଭାଷାଜ୍ଞାନ ୨୫୦ (ଦୁଇଶହ ପଚାଶ) ଇଂରେଜୀ ଶବ୍ଦ ଓ ଅନେକ ରୁଷୀୟ ପ୍ରତିଶବ୍ଦ ଦ୍ୱାରା ସୀମିତ। କିନ୍ତୁ ବୈଜ୍ଞାନିକମାନଙ୍କ ମତ ଯେ ଏହି ମେସିନରେ ପାଞ୍ଚ ଅକ୍ଷର ବିଶିଷ୍ଟ ୧୦ ଲକ୍ଷ ଶବ୍ଦ ଓ ଏହାର ପ୍ରତିଶବ୍ଦ ରଖାଯାଇ ପାରିବ। ଏଥିରେ ଏକ ସ୍ୱୟଂଚାଳିତ ଟାଇପ୍‌ରାଇଟାର୍ ଲଗାଯାଇଛି ଏବଂ ଏହା ଅନୁବାଦଗୁଡ଼ିକ ଟାଇପ୍ କରେ। ଏହି ମେସିନ୍‌ରେ କୌଣସି ଇଂରେଜୀ ଭାଷାକୁ ରୁଷ୍‌ଭାଷାରେ ଅନୁବାଦ କରିବାକୁ ଦେଲେ ୯ ସେକେଣ୍ଡ ପର୍ଯ୍ୟନ୍ତ ଯନ୍ତ୍ରଟି ସ୍ଥିର ରହେ ଓ ଚିନ୍ତା କରେ, ତା ପରେ ନିର୍ଭୁଲ ଅନୁବାଦ ଟାଇପ୍ କରିଦିଏ। କେତେକ ନିୟମାନୁସାରେ ଏହି ମେସିନ ତିଆରି ହେଉଅଛି; ତେଣୁ ବୈଜ୍ଞାନିକମାନେ ପୃଥିବୀର ଅନ୍ୟାନ୍ୟ ଭାଷାରେ ଅନୁବାଦର ବ୍ୟବସ୍ଥା କରିବା ନିମନ୍ତେ ଏହିପରି ଯନ୍ତ୍ର ତିଆରି କରିବାକୁ ପ୍ରସ୍ତୁତ।

ଜାନ୍‌ବାନ୍ ଶିନ୍ଦ୍ ନାମକ ଜଣେ ଡଚ୍ ବୈଜ୍ଞାନିକ ଆଜି ଏକ ଆଶ୍ଚର୍ଯ୍ୟ ଯନ୍ତ୍ର ତିଆରି କରିଛନ୍ତି। ଭିନ୍ନ ରାସାୟନିକ ଦ୍ରବ୍ୟର ସଂଯୋଗରେ ଏକ ଅଦ୍ଭୁତ ଦ୍ରବ୍ୟର ସେ ସୃଷ୍ଟି କରିଛନ୍ତି ଯାହା ତାପମାନ ଅନୁସାରେ ନିଜର ରଙ୍ଗ ସର୍ବଦା ପରିବର୍ତ୍ତନ କରେ। ଏହି ଦ୍ରବ୍ୟର ବିଶେଷତ୍ୱ ହେଉଛି ଯେ ଏହା ପାଣି ସଦୃଶ କୌଣସି ପଦାର୍ଥରେ ଲାଗି ରହେ ନାହିଁ। ଉକ୍ତ ବୈଜ୍ଞାନିକ କହନ୍ତି ଯେ ଏହି ମେସିନ୍‌ର ସାହାଯ୍ୟରେ ଏପରି ଅଦ୍ଭୁତ ବସ୍ତ୍ର ପ୍ରସ୍ତୁତ ହୋଇପାରିବ ଯାହା ଭିନ୍ନ ତାପମାନରେ ନିଜର ରଙ୍ଗ ପରିବର୍ତ୍ତନ କରି ପାରିବ ଓ ଥଣ୍ଡା ସମୟରେ ଗରମ, ଗରମ ସମୟରେ ଥଣ୍ଡା ଏବଂ ବର୍ଷା ସମୟରେ ଜଳ-ପ୍ରତିରୋଧୀ ହେବ।

---

## ଡାକଟିକଟ ସଂଗ୍ରହ—୨୨

# କେତୋଟି ଜାଣିବା କଥା

ଶ୍ରୀ ରଘୁନାଥ ପାଢ଼ୀ ଶର୍ମା

(ପ୍ରଶ୍ନ ପଚାରିଛନ୍ତି ସଦାଦେବ ସାହୁ, ବ୍ରହ୍ମପୁର)

ପ୍ର: ୧— Indian Stamp Journal ପତ୍ରିକାର ଠିକଣା କଣ ? ପ୍ରତି ସଂଖ୍ୟାର ମୂଲ୍ୟ କେତେ ?

ଉ—Indian Stamp Journal, Hornby Road, Bombay. ପ୍ରତି ସଂଖ୍ୟାର ମୂଲ୍ୟ ଏକ ଟଙ୍କା, ବାର୍ଷିକ ମୂଲ୍ୟ ସାତଟଙ୍କା। ପତ୍ରିକାଟି ଆର୍ଟ କାଗଜରେ ମୁଦ୍ରିତ ହୁଏ।

୨—Orissa Philatelic Club ନିମନ୍ତେ ସଭ୍ୟହେବା ଚାନ୍ଦା କେତେ କାର୍ଯ୍ୟରେ ଲାଗିବ ? ଖୁବ୍ ଦୂରରେ ଥାଇ କିପରି ତା ସହିତ ସମ୍ବନ୍ଧ ରକ୍ଷା କରି ପାରିବୁ ?

ଉ—ଏହାଦ୍ୱାରା ସଭ୍ୟହେବା ଚାନ୍ଦାରେ, କ୍ଲବର ବାର୍ଷିକ ଉତ୍ସବ ସଭ୍ୟମାନଙ୍କୁ ସୁଲଭ ମୂଲ୍ୟରେ ଡାକ ଟିକଟ ଏବଂ ଡାକ ଟିକଟ ସଂଗ୍ରହ ନିମନ୍ତେ ଉପଯୋଗୀ ଉପକରଣ ଯୋଗାଇ ଦିଆଯିବ। ସଂଗ୍ରାହକ ସଂଗ୍ରାହକ ଭିତରେ ମୈତ୍ରୀ ସ୍ଥାପନ କରାଯିବ। ଡାକଟିକଟ ସମ୍ବନ୍ଧୀୟ ବହି ଏବଂ ଅର୍ଥର ସୁବ୍ୟବସ୍ଥା ହେଲେ ଗୋଟିଏ ପତ୍ରିକା ପ୍ରକାଶ କରାଯିବ। ସଭ୍ୟମାନେ କ୍ଲବ ସହିତ ଚିଠିପତ୍ର ଦ୍ୱାରା ସମ୍ବନ୍ଧ ରକ୍ଷା କରିବେ।

୩—ପ୍ରଥମଦିନ ବା F. D. C. ସଂଗ୍ରହ ବହିର ନାମ କଅଣ ?

ଉ – Album for collecting Covers.

୪—"ତାରକା" ଜଳଚିହ୍ନଟି ଓଲଟା ବୋଲି ଜାଣିବୁ କିପରି ?

ଉ—ତାରକା ଜଳଚିହ୍ନ ଦୁଇ ପ୍ରକାର ଅଛି। Single ତାରକା ଓ Mult ତାରକା। ଏହି ତାରକା-ଗୁଡ଼ିକ ଓଲଟିଲେ ଜାଣି ହେବ ନାହିଁ। କିନ୍ତୁ Single ତାରକା ଥିବା ଡାକ ଟିକଟର ଜଳଚିହ୍ନ ପରି ଗୋଟିଏ ତାରକା ବଦଳରେ ଅଧା ଅଧା ଦିଶେ ତେବେ ଏହି ଟିକଟଟି ଠିକ୍ ନାହିଁ ବୋଲି ଜାଣିବ।

୫—ମୋର ଟିକଟ ସଂଗ୍ରହ କଲେ ଭବିଷ୍ୟତରେ କ'ଣ ବିକ୍ରୀ ହୋଇ ପାରିବ ?

ଉ—ହଁ ବିକ୍ରୀ ହୋଇ ପାରିବ, କିନ୍ତୁ ଆଉ ଡାକ ଘରେ ଚଳିବ ନାହିଁ । ଡାକ ଟିକଟ ସମ୍ବନ୍ଧୀୟ କର୍ମଚାରୀମାନେ ଏହା ନଷ୍ଟପ୍ରାୟ କରିବେ ।

୬—ଟିକଟରେ ଲେଖାଥିବା ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ କ'ଣ ? (i) UNIV. POST. UNION (ii) OMS.

ଉ—(i) Universal Postal Union ନାମକ ଏକ ସଙ୍ଘ ଜାତିସଙ୍ଘ ପକ୍ଷରୁ ଗଠନ କରା ଯାଇଛି । ଏହାଦ୍ୱାରାହିଁ ଗୋଟିଏ ଦେଶରୁ ଅନ୍ୟ ଦେଶ ଭିତରେ ଡାକ ଚଳାଚଳ ହେଉଛି । ଏହା ୧୯୪୯ ରେ ସ୍ଥାପିତ ହୋଇଅଛି । ୧୯୪୯ ରେ ଏହାର ସ୍ମୃତି ଉଦ୍ଦେଶ୍ୟରେ ଭାରତ ଗୃହ-ଗୋଟି ସ୍ମୃତି ଟିକଟ ପ୍ରକାଶ କରିଥିଲେ ।

(ii) O M S ଅର୍ଥ On Majesty's Service. ସରକାରୀ ଚିଠିପତ୍ର ଗୁଡ଼ିକରେ ଯେଉଁ ଟିକେଟ ଲଗାଯାଏ ସେଗୁଡ଼ିକୁ Service Stamps ବୋଲିଯାଏ । ଭାରତ ବ୍ରିଟିଶ ସରକାରର ଅଧୀନରେ ଥିବା ସମୟରେ ସରକାରୀ ଡାକ ଟିକଟ ଗୁଡ଼ିକରେ O. M. S. ପଡ଼ୁଥିଲା । ବର୍ତ୍ତମାନ କେବଳ Service ପଡ଼ୁଛି ।

## ORISSA PHILATELIC CLUB

ଓଡ଼ିଶାବାସୀଙ୍କୁ ଏହାଦ୍ୱାରା ଆହ୍ୱାନ କରୁଛୁ କି ସେମାନେ ଯଥାଶୀଘ୍ର ଏକଟଙ୍କା M. O. କରି O. P. Cରେ ସଭ୍ୟ ହୁଅନ୍ତୁ । ନବାଗତ ସଭ୍ୟ ମାନଙ୍କୁ ସ୍ୱାଗତ କରାଉଛୁ । ଜୁଲାଇ ୨୦ ତାରିଖ ସୁଦ୍ଧା ୨ ଜଣ ସଭ୍ୟ ପ୍ରବେଶ କରିଛନ୍ତି ।

ଶ୍ରୀ ଚିତ୍ତରଞ୍ଜନ ଦାସ, ଶ୍ରୀ ନରହରି ସାମନ୍ତ ।



# ଫଳାହାର ଶରୀର ପାଇଁ ଯଥେଷ୍ଟ କି ?

ଶ୍ରୀ ବାସୁଦେବ ତ୍ରିପାଠୀ ବି. ଏ., ଡି. ଇଡ୍.

ଲୋକେ ନିଜର ଖାଦ୍ୟ ରୁଚି ଅନୁଯାୟୀ ଖାଆନ୍ତି । କାହାର ମାଛ, ମାଂସ ପ୍ରତି ଶ୍ରଦ୍ଧା ଥିଲେ, ଆଉ କାହାର ଫଳମୂଳ ପ୍ରତି ଆଗ୍ରହ ଥାଏ । କୌଣସି ନିର୍ଦ୍ଦିଷ୍ଟ ଖାଦ୍ୟ ପ୍ରତି ବୀତସ୍ପୃହ ହେବାର ଯେଉଁ ସବୁ କାରଣ ରହିଅଛି ତନ୍ମଧ୍ୟରୁ ମାନସିକ ରୁଚି ଅନେକ ସମୟରେ ପ୍ରଧାନ କାରଣ ହୋଇ ପଡ଼େ । ମାଛ, ମାଂସ ଖାଉଥିବା ଲୋକମାନେ ଅନେକ ସମୟରେ ମନେ କରନ୍ତି ଯେ ସେମାନେ ଯେଉଁ ଖାଦ୍ୟ ଖାଉଛନ୍ତି ତାହା ସର୍ବୋତ୍କୃଷ୍ଟ । କିନ୍ତୁ ଫଳମୂଳରେ ତଦପେକ୍ଷା ଅଧିକ ଗୁଣ ଥିବାର ଜଣା ଯାଇଛି । ମାଛ, ମାଂସକୁ ଆମେ ତାମସିକ ଖାଦ୍ୟ ରୂପେ ଗଣିଥାଉଁ । ଫଳମୂଳ ସାତ୍ତ୍ୱିକ ଖାଦ୍ୟ ହୋଇଥିବାରୁ ଏ ଦେଶର ଯୋଗୀ ଋଷିମାନେ ତାହାକୁ ବିଶେଷ ପସନ୍ଦ କରୁଥିଲେ । ମାଂସରୁ ପ୍ରଧାନତଃ ପ୍ରୋଟିନ (Protein) ମିଳେ । ଉକ୍ତ ପ୍ରୋଟିନ୍ ପ୍ରାଣୀ ଓ ଫଳମୂଳ ଜଗତ ମଧ୍ୟରେ ପରିବ୍ୟାପ୍ତ । ଏହାଦ୍ୱାରା ଶରୀରର ଶିରା ଗଠିତ ହୁଏ । ବର୍ଦ୍ଧିଷ୍ଣୁ ବାଳକ ବାଳିକାମାନଙ୍କ ପକ୍ଷରେ ଏହି ଖାଦ୍ୟ ବିଶେଷ ପ୍ରୟୋଜନ ।

ପ୍ରୋଟିନ୍ ଦେହର ରକ୍ତ ସହିତ ସଂଶ୍ଳିଷ୍ଟ ହେଲା ପରେ ତାହା କେତେକ ଅଂଶରେ ବିଭକ୍ତ ହୋଇ amino ଏସିଡ୍ ହୁଏ । ଉକ୍ତ amino ଏସିଡ୍ ପ୍ରୋଟିନ୍ର ଉପାଦେୟ ପଦାର୍ଥ । ଏହାର ସଂଖ୍ୟା ୨୦ ବୋଲି ଜଣା ଯାଇଅଛି । ପ୍ରତ୍ୟେକ ପ୍ରୋଟିନ ମଧ୍ୟରେ ଏହା ପରିଲକ୍ଷିତ ହୁଏ ନାହିଁ । ମାଂସ, ଦୁଧ, ଅଣ୍ଡା, ଛେନା, ଶିମ୍ବ ପ୍ରଭୃତି ମଧ୍ୟରେ ପ୍ରୋଟିନର ସମସ୍ତ ଗୁଣ ରହିଥାଏ । ଦୁଧ ଓ ଫଳରେ ଦୈହିକ ଗୁଣର ଅଂଶ ଯଥେଷ୍ଟ ପରିମାଣରେ ରହିଅଛି ।

ମାଂସ ଖାଇବାରେ ମଧ୍ୟ ପ୍ରୋଟିନ୍ର ତିନିପ୍ରକାର ମନ୍ଦ ଗୁଣ ଦେଖାଯାଏ :— (କ) ଏହା ଅମ୍ଳ ଗଠନ କରେ । (ଖ) ଭିଟାମିନ୍ର ଉପଯୁକ୍ତ ସାହାଯ୍ୟକାରୀ ହୁଏନାହିଁ ।

(ଗ) ଏଥିରେ ମଧ୍ୟ ଉତ୍ତମ ଖଣିଜସାର ନାହିଁ । ତେଣୁ ଖାଦ୍ୟର ବହୁଳ ଅଂଶରେ ଆଲ୍‌କାଲାଇନ୍ ଅଭାବ ଘଟେ । ଫଳ ମୂଳରେ **alkaline** ଥିବାରୁ ତାହା ଜମବର୍ଦ୍ଧିଷ୍ଣୁ ଶରୀର ପକ୍ଷରେ ବିଶେଷ ଉପଯୋଗୀ । ସାଧାରଣତଃ ମାଂସ, ରୁଟି ଓ ଆଳୁ ଖାଇଲେ ପେଟରେ ଅମ୍ଳ ସୃଷ୍ଟି କରେ । ଦୁଧ, ଅଣ୍ଡା ବା ଛେନାରେ ଭିଟାମିନ୍ କ ଓ ଖଣିଜ କାଲ୍‌ସିଅମ୍ ଥାଏ । ତେଣୁ ଏଗୁଡ଼ିକ ଜୀବନ ଗଠନପାଇଁ ସହାୟକ । ଅଣ୍ଡାରେ କି ଗୁଣ ଥାଏ ଜାଣ ? ଏଥିରେ ଖଣିଜ, ଫସ୍‌ଫରସ୍ ଓ ଲୌହ ଅଂଶ (**iron**) ଅଛି । ଡାକ୍ତର ଏଚ୍. ସି. ଶର୍ମା ତାହାଙ୍କ ଲିଖିତ "**Food products**" ନାମକ ପୁସ୍ତକରେ ଉଲ୍ଲେଖ କରି ଅଛନ୍ତି ଯେ, ମାଂସରୁ ଯେଉଁ ପ୍ରୋଟିନ୍ ମିଳେ ତାହା ଫଳମୂଳଠାରୁ ଲବ୍ଧ ପ୍ରୋଟିନ୍‌କୁ ସାହାଯ୍ୟ କରେ । ଯେଉଁମାନେ ଫଳାହାରୀ ନୁହନ୍ତି ସେମାନେ ମାଂସ ଖାଇବା ଦରକାର । ଆଜିକାଲି ଫଳମୂଳର ମୂଲ୍ୟ ଯଥେଷ୍ଟ ବୃଦ୍ଧି ପାଇଥିବାରୁ ଲୋକମାନେ ତାହା କିଣି ଖାଇପାରୁ ନାହାନ୍ତି । ଦୁଧ ଖାଇଲେ ଲୋକ ବହୁ ଉପକାର ପାଏ । ତହିଁରେ ସମସ୍ତ ପ୍ରକାର ଖାଦ୍ୟସାର ନିହିତ ଥିଲେ ମଧ୍ୟ ଲୌହ ଅଂଶ କମ୍ ଥାଏ । କାଲ୍‌ସିଅମ୍ ଓ ଭିଟାମିନ୍ କ ଏଥିରେ ଭଲ ମିଳେ ବୋଲି ଡାକ୍ତରମାନେ ଏକମତ ହୁଅନ୍ତି ।

ଯେଉଁମାନେ ଦୁଧ ଖାଆନ୍ତି ନାହିଁ କି ଖାଇବାକୁ ଭଲ ପାଆନ୍ତି ନାହିଁ, ସେମାନେ ଦୁଧରେ ତିଆରି ହେଉଥିବା ବାଇଲି ଜିନିଷ ଖାଇବା ଦରକାର । ନୋହିଲେ ଶିମ୍ବ ଓ ଅନ୍ୟାନ୍ୟ ଫଳମୂଳ ଖାଇ ଦେହର ଅଭାବ ପୂରଣ କରିବାକୁ ହେବ । ଚୀନ ଦେଶର ଲୋକେ ଶିମ୍ବ ବିଶେଷ ପରିମାଣରେ ଖାଆନ୍ତି । ଏହା ସେମାନଙ୍କ ଖାଦ୍ୟର ପ୍ରଧାନ ଅଂଶ କହିଲେ ଅତ୍ୟୁକ୍ତି ହେବନାହିଁ । ନଡ଼ିଆ ଶସରେ ପ୍ରୋଟିନ୍ ଅଛି । ଯେଉଁମାନେ ଉତ୍ତମରୂପେ ତାହା ଚୋବାଇ ଖାଆନ୍ତି, ସେମାନେ ତହିଁରୁ ସୁଫଳ ଲାଭ କରନ୍ତି ।

ନିମ୍ନଲିଖିତ ଜିନିଷଗୁଡ଼ିକରୁ କେଉଁ ପରିମାଣରେ **acid** ମିଳେ ତାହାର ତୁଳନାତ୍ମକ ହିସାବ ଦିଆଗଲା—

| | | |
|---|---|---|
| ଗାଈ ଦୁଧ— | ୪୦ | ଭାଗ |
| ଫଳ ମୂଳ— | ୭୦ | ” |
| ଅଣ୍ଡା— | ୭୬ | ” |
| ମାଛ— | ୧୩୦ | ” |
| ଛେଳିମାଂସ— | ୧୩୪ | ” |

ଆମ ଦେଶର ଲୋକମାନେ ପ୍ରାୟ ଫଳମୂଳ ଆହାର କରିବାକୁ ଇଚ୍ଛା କରନ୍ତି ; ମାତ୍ର ପାଶ୍ଚାତ୍ୟ ଦେଶର ଲୋକେ ମାଂସାଶୀ ହୋଇଥିବାରୁ ସେମାନେ ଭାରତୀୟଙ୍କ ଠାରୁ ଅଧିକ ଉଗ୍ର ଓ ଚଞ୍ଚଳ ।

ଫଳମୂଳରେ ଆଲ୍‌କାଲାଇନ୍ ରହିଛି । ତାଛଡ଼ା ତହିଁରେ ଖାଦ୍ୟଗୁଣ, ଭିଟାମିନ ଓ ଅନ୍ୟାନ୍ୟ ଗୁଣ ମଧ୍ୟ ଦେଖାଯାଏ । ଅଙ୍ଗୁର ସ୍ୱାସ୍ଥ୍ୟ ପକ୍ଷରେ ବଡ଼ ଉପାଦେୟ । କାସ୍ପିୟାନ୍ ହ୍ରଦ କୂଳରେ ଅଙ୍ଗୁର ବହୁତ ମିଳେ । କାଶ୍ମୀର ଅଞ୍ଚଳରେ ଓ ଭୂମଧ୍ୟସାଗରୀୟ ଜଳବାୟୁରେ ଅଙ୍ଗୁର, ଫିଗ୍ ଇତ୍ୟାଦି ଭଲ ହୁଏ । ଏଥିରେ ଆଶାଜନକ ଭିଟାମିନ କିମ୍ବା **minerals** ନ ଥିଲେ ମଧ୍ୟ କାର୍‌ବୋହାଇଡ୍ରେଟ୍ ଯଥେଷ୍ଟ ଅଛି. ଏଥିରେ କେହି ଅମତ ହେବେ ନାହିଁ ।

( Elizabeth E. Newfieldଙ୍କ ମତାନୁଯାୟୀ ଲିଖିତ )



( ୧୫ ପୃଷ୍ଠାର ଅବଶିଷ୍ଟାଂଶ )

ଗ୍ରହଣକାରୀମାନଙ୍କଠାରୁ ଶବ୍ଦ ସବୁ ବୈଦ୍ୟୁତିକ ତରଙ୍ଗରେ ପରିଣତ ହୋଇ କେନ୍ଦ୍ରନିୟନ୍ତ୍ରଣ କୋଠରୀ ବା କଣ୍ଟ୍ରୋଲ ରୁମ୍‌କୁ ଆସୁଥାନ୍ତି । ଏହିଠାରେ ବୁଦ୍ଧିମାନ ଇଞ୍ଜିନିୟର୍ ରେକର୍ଡ ତରଙ୍ଗରୁ ଆସୁଥିବା ବୈଦ୍ୟୁତିକ ତରଙ୍ଗ ଓ ଡ୍ରାମା ଷ୍ଟୁଡିଓରୁ ଆସୁଥିବା ବୈଦ୍ୟୁତିକ ତରଙ୍ଗକୁ ଇଚ୍ଛାନୁକ୍ରମେ ମିଶାଇ ଟ୍ରାନ୍‌ସମିଟର ନିକଟକୁ ପଠାଇ ଦିଅନ୍ତି । ଟ୍ରାନ୍‌ସମିଟର ତାର କାର୍ଯ୍ୟ ସମ୍ପାଦନ କରେ ।

ଗଲ ରଥଯାତ୍ରାରେ ଘରେ ବସି ରେଡିଓ ରିସିଭର ସାହାଯ୍ୟରେ ପୁରୀ ରଥଯାତ୍ରାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଅନେକେ ପାଇଥିବେ । କଲିକତାରେ ଟେଷ୍ଟ କ୍ରିକେଟ ଖେଳର ବିବରଣୀ ମଧ୍ୟ ରେଡ଼ିଓରୁ ଶୁଣାଯାଏ । ଏଠି ପ୍ରଶ୍ନ ଉଠିପାରେ ଯେ ପୁରୀରେ ବା କଲିକତାର କ୍ରିକେଟ ପଡ଼ିଆରେ ରେଡ଼ିଓ ଷ୍ଟେସନ୍ ନ ଥିଲେ ମଧ୍ୟ ଏହା ସମ୍ଭବ ହୁଏ କିପରି ? ଏହି ବ୍ୟବସ୍ଥାକୁ ରେଡିଓ ରିଲେ କୁହାଯାଏ । ଏହା ଯେ କୌଣସି ସ୍ଥାନରୁ ଦିଆ ଯାଇ ପାରିବ । ଯେଉଁଠାରେ ସଭା ସମିତି ଓ ଅନ୍ୟାନ୍ୟ ବିଶେଷ ଅନୁଷ୍ଠାନ ଅନୁଷ୍ଠିତ ହୁଏ ସେଠାରେ ଅଲ୍ ଇଣ୍ଡିଆ ରେଡ଼ିଓର ଇଂଜିନିୟର୍‌ମାନେ ମାଇକ୍ରୋଫୋନ୍ ନେଇ ରହନ୍ତି । ଏହି ମାଇକ୍ରୋଫୋନରୁ ତାର ସଂଯୋଗ କରାହୁଏ ଦୂରରେ ଥିବା ରେଡ଼ିଓ ଷ୍ଟେସନର କଣ୍ଟ୍ରୋଲ ରୁମ୍‌କୁ । ଏଥିଲାଗି ସେମାନେ ଡାକ ଓ ତାର ବିଭାଗର ଇଂଜିନିଅରମାନଙ୍କ ସାହାଯ୍ୟ ନିଅନ୍ତି । ମୋଟ ଉପରେ କହିଲେ, ସେଠାରେ ଗୋଟିଏ ଅସ୍ଥାୟୀ ଖୋଲା ଷ୍ଟୁଡ଼ିଓ ନିର୍ମାଣ କରାହୁଏ । ଅନେକ ସ୍ଥଳରେ ସଭାସମିତିର ବକ୍ତାଙ୍କ ପାଟରେ ଗୋଟିଏ ମାଇକ୍ରୋଫୋନ ରଖି ସେଠାରୁ ରେଡିଓ ଷ୍ଟେସନର କଣ୍ଟ୍ରୋଲ ରୁମ୍‌କୁ ତାର ସଂଯୋଗ କରାହୁଏ ଏବଂ ତାହାରେ ହେଉଥିବା ଅନୁଷ୍ଠାନ ଗୁଡ଼ିକର ବିବରଣୀ କଣ୍ଟ୍ରୋଲ ରୁମ୍‌ରେ ପହଞ୍ଚେ ବୈଦ୍ୟୁତିକ ଶକ୍ତି ରୂପରେ ଏବଂ ସଙ୍ଗେ ସଙ୍ଗେ ଏହା ଟ୍ରାନ୍‌ସ୍‌ମିଟର ନିକଟକୁ ଚାଲିଯାଏ । ରେଡିଓ ଷ୍ଟେସନରେ ମଧ୍ୟ ଗୋଟିଏ ରେକର୍ଡିଂ ବିଭାଗ ଅଛି । ଏଠାରେ ପ୍ରଧାନ ପ୍ରଧାନ ଜନନାୟକ, ବୈଜ୍ଞାନିକ ଓ ଗାୟକ ଗାୟିକାମାନଙ୍କର ବକ୍ତୃତା ଓ ସଙ୍ଗୀତକୁ ରେକର୍ଡ଼ିଂ କରି ଭବିଷ୍ୟତର ବ୍ୟବହାର ଲାଗି ରଖାଯାଏ । ଅନେକ ସମୟରେ ଦିଲ୍ଲୀ ବା କଲିକତା ଷ୍ଟେସନର ପ୍ରୋଗ୍ରାମ ଆମ୍ଭେମାନେ କଟକ ରେଡ଼ିଓ ଷ୍ଟେସନରୁ ପ୍ରସାରିତ ହେବାର ଶୁଣୁ । ଅଲ୍ ଇଣ୍ଡିଆ ରେଡ଼ିଓରୁ ପ୍ରସାରିତ ଇଂରାଜୀ ଖବରଗୁଡ଼ିକ ଦିଲ୍ଲୀ ଷ୍ଟେସନରୁ ପ୍ରସାରିତ ହୁଏ ଏବଂ ଭାରତର ଅନ୍ୟାନ୍ୟ ସବୁ ଷ୍ଟେସନ ଏହାକୁ ରିଲେ କରି ଶୁଣାନ୍ତି । ଏହି ରିଲେ ଅନ୍ୟ ଧରଣର ହୁଏ । ପ୍ରତ୍ୟେକ ରେଡିଓ ଷ୍ଟେସନର ଗୋଟିଏ ରିସିଭିଂ ସେଣ୍ଟର ଅଛି । ଏଠାରେ ଗୋଟିଏ ଖୁବ୍ ଭଲ ଶୁଣିବା ଯନ୍ତ୍ର ବା ରିସିଭର ଥାଏ । ଦିଲ୍ଲୀରେ ଠିକ ଖବର ପଢ଼ାହେବା ସମୟରେ ଅନ୍ୟାନ୍ୟ ଷ୍ଟେସନ ସବୁ ସେମାନଙ୍କର ରିସିଭିଂ ସେଣ୍ଟରରେ ଏହି ଖବରକୁ ଧରନ୍ତି ଏବଂ ଏଠାରୁ ସେହି ଖବରରୁ ମିଳୁଥିବା ଶବ୍ଦ ଶକ୍ତିକୁ ବୈଦ୍ୟୁତିକ ତରଙ୍ଗରେ ପରିଣତ କରି ସେମାନଙ୍କର ନିଜ ନିଜର ଟ୍ରାନ୍‌ସମିଟର ନିକଟକୁ ପଠାଇ ଦିଅନ୍ତି । ଏହାଦ୍ୱାରା ପ୍ରତ୍ୟେକ ଷ୍ଟେସନର ଟ୍ରାନ୍‌ସମିଟର ତାର ନିଜର ଫ୍ରିକ୍ୱେନ୍‌ସିରେ ଏହି ଖବର ପ୍ରଚାର କରେ । ଏହି ଉପାୟରେ ଗୋଟିଏ ରେଡିଓ ଷ୍ଟେସନ ଅନ୍ୟ ଯେ କୌଣସି ଷ୍ଟେସନର ପ୍ରୋଗ୍ରାମକୁ ରିଲେ କରି ପ୍ରଚାର କରିପାରିବ ।

ଟ୍ରାନ୍‌ସମିଟରର ପାୱାର ବା ଶକ୍ତିକୁ ୱାଟ୍‌ରେ ମପାଯାଏ । କଟକ ରେଡ଼ିଓ ଷ୍ଟେସନର ଟ୍ରାନ୍‌ସମିଟରର ପାୱାର୍ ଏକ ହଜାର ୱାଟ୍ ବା ଏକ କିଲୋୱାଟ୍ । ଏହା ଦିଲ୍ଲୀ ଓ କଲିକତା ଷ୍ଟେସନମାନଙ୍କ ତୁଳନାରେ ଅତ୍ୟନ୍ତ ଦୁର୍ବଳ ଯାହା ଫଳରେ କି ସମଗ୍ର ଓଡ଼ିଶାରେ କଟକ ରେଡିଓ ଷ୍ଟେସନର ପ୍ରୋଗ୍ରାମ ଭଲଭାବେ ଶୁଣାଯାଏ ନାହିଁ । ଆଠଗଡ଼ରେ ଏକଶତ କିଲୋୱାଟ୍ ଶକ୍ତି ସମ୍ପନ୍ନ ଗୋଟିଏ ରେଡ଼ିଓ ଷ୍ଟେସନ ସ୍ଥାପନ କରାଯିବ ଏବଂ ଏହା ଦ୍ୱାରା ପ୍ରାଚ୍ୟ ଓ ଦୂର ପ୍ରାଚ୍ୟ ଦେଶମାନଙ୍କୁ ଭାରତର ଖବର ଯୋଗାଇ ଦିଆଯିବ । କଟକ ରେଡିଓ ଷ୍ଟେସନର ପାୱାର ମଧ୍ୟ ଏକ କିଲୋୱାଟ୍‌ରୁ ଦଶ କିଲୋୱାଟ୍‌କୁ ବଢ଼ାଇ ଦିଆଯିବ ।

ହିମାଳୟ ଆରୋହଣକାରୀ ଦଳ ଗୋଟିଏ ସ୍ୱତନ୍ତ୍ର ଧରଣର ଟ୍ରାନ୍‌ସ୍‌ମିଟର ଓ ରିସିଭର ବ୍ୟବହାର କରୁଥିଲେ । ପଠାଇବା ଯନ୍ତ୍ର ଓ ଶୁଣିବା ଯନ୍ତ୍ରକୁ ଏକାଠି କରି ଗୋଟିଏ ବାକସରେ ରଖି ତାକୁ ସେମାନଙ୍କ ପିଠିରେ ପକାଇ ଆରୋହଣ କରୁଥିଲେ । ଏହା ଖୁବ୍ ଛୋଟ ଓ ହାଲୁକା । ଏହାର ଏରିଆଲ୍ ଠିକ ଗୋଟିଏ ଛଡ଼ି ପରି ଏବଂ ଏହା ସେହି ଯନ୍ତ୍ର ସଙ୍ଗେ ସଂଲଗ୍ନ ହୋଇଥାଏ । ଏହାଦ୍ୱାରା ଏକ ଆରୋହଣକାରୀ ଓ ଅନ୍ୟ ଏକ ଆରୋହଣକାରୀ ମଧ୍ୟରେ ସମସ୍ତ ଖବରର ଆଦାନ ପ୍ରଦାନ ହୁଏ । ଏହିଭଳି ଯନ୍ତ୍ର ମଧ୍ୟ ପୋଲିସ୍ ବିଭାଗର ମଟର ଗାଡ଼ିରେ ରଖାଯାଇ-

ଥାଏ ଯାହାଦ୍ୱାରା ପୋଲିସ କର୍ମଚାରୀମାନେ ଖୁବ୍ ସହଜରେ ଗୁପ୍ତଖବରମାନ ମାଇପାରନ୍ତି ।

ଭାରତରେ ଗୋଟିଏ 'ରେଡ଼ିଓ ଆମେଚର୍ସ କ୍ଲବ' ଅଛି । ଏହାର ସଭ୍ୟମାନଙ୍କୁ ସରକାର ଟ୍ରାନ୍‌ସମିଟର ରଖିବା ପାଇଁ ଅନୁମତି ଦିଅନ୍ତି । ଏହାଦ୍ୱାରା ଏକ ସହରର ସଭ୍ୟ ଭାରତର ବା ଅନ୍ୟ ଦେଶର କୌଣସି ସହରର ଆମେଚର ସଭ୍ୟଙ୍କ ସଙ୍ଗେ ଖବର ଆଦାନ ପ୍ରଦାନ କରିପାରିବେ । ଅବଶ୍ୟ ଏଥିପାଇଁ 'ମୋର୍ସକୋଡ୍' ଜାଣିବାକୁ ହୁଏ । ଯେଉଁମାନେ ଏହି ଅନୁଷ୍ଠାନର ସଭ୍ୟ ହେବାକୁ ଇଚ୍ଛାକରନ୍ତି ସେମାନେ ସେକ୍ରେଟେରୀ, ରେଡିଓ ଆମେଚର୍ସ କ୍ଲବ ଅଫ୍ ଇଣ୍ଡିଆ, ମୋହୋ (Mhow), ସେଣ୍ଟ୍ରାଲ ଇଣ୍ଡିଆଙ୍କ ପାଖକୁ ଲେଖିଲେ ସମସ୍ତ ବିବରଣୀ ଜାଣିପାରିବେ । ଏହା ଦ୍ୱାରା ପୃଥିବୀର ବିଭିନ୍ନ ଦେଶମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ଜାଗି ଉଠିବ ।

---

# ଅନସ୍ତମିତ ସୂର୍ଯ୍ୟ

ଶ୍ରୀ ରବିନାରାୟଣ ସାହୁ

ସୂର୍ଯ୍ୟ ଆମ ପୃଥିବୀଠାରୁ କେତେ ନିକଟରେ, ପୁଣି କେତେ ଦୂରରେ ଅବସ୍ଥିତ । ସୂର୍ଯ୍ୟଠାରୁ ନିର୍ଗତ ଗୋଟିଏ ଆଲୋକ ରଶ୍ମିକୁ ପୃଥିବୀରେ ପହଞ୍ଚିବାକୁ ମାତ୍ର ୮ ମିନିଟ ଲାଗେ । କିନ୍ତୁ ପୃଥିବୀର ନିକଟତମ ତାରା ଆଲଫା ସେଣ୍ଟରିଠାରୁ ଆଲୋକରଶ୍ମି ପୃଥିବୀରେ ପହଞ୍ଚିବାକୁ ୪ ବର୍ଷ ଲାଗିଥାଏ । ସେ ଅବଶ୍ୟ ଆମର (ଉତ୍ତର ଗୋଲାର୍ଦ୍ଧବାସୀଙ୍କର) ଦୃଷ୍ଟିଗୋଚର ହୁଏ ନାହିଁ କାରଣ ଏହା ପୃଥିବୀର ଦକ୍ଷିଣ ଆକାଶରେ ଅବସ୍ଥିତ । ଉତ୍ତର ଗୋଲାର୍ଦ୍ଧର ପ୍ରଧାନ ତାରା ଧ୍ରୁବତାରା ଆମଠାରୁ କେତେ ଦୂରରେ ଅବସ୍ଥିତ କଳ୍ପନା କରାଯାଉ । ଠିକ ଏହି ମୁହୂର୍ତ୍ତରେ ଯଦି ଧ୍ରୁବତାରା ଆକାଶରୁ ଅପସରି ଯାଏ ତେବେ ଏ କଥା ଆମେ ଜାଣିବା ୩୬୦ ବର୍ଷ ପରେ । ଆମର ଆୟୁ ତ ଅଳ୍ପ ; ଆମେ ନଥିବା । ଆମର ଭବିଷ୍ୟତ ବଂଶଧରମାନେ କଥାଟା ଜାଣିବେ । କିନ୍ତୁ ସୂର୍ଯ୍ୟ ଯଦି ଅନ୍ତର୍ହିତ ହୋଇଯାଏ ଅନ୍ତର୍ଦ୍ଧାନର ମାତ୍ର ୮ ମିନିଟ ପରେ ଆମେ ତାହା ଜାଣି ପାରିବା । ସେ ଦୃଷ୍ଟିରୁ ଦେଖିଲେ ସୂର୍ଯ୍ୟ ଆମଠାରୁ ସତେ କେତେ ନିକଟରେ ଅବସ୍ଥିତ ନୁହଁନ୍ତି !

ପୁଣି ସେ ଆମଠାରୁ କେତେ ଦୂରରେ ! ମନେ କରାଯାଉ ଆମର ସୂର୍ଯ୍ୟ ପର୍ଯ୍ୟନ୍ତ ଲମ୍ବମାନ ଗୋଟିଏ ହାତ ଅଛି । ହାତଟି ତ ସୂର୍ଯ୍ୟ ପୃଷ୍ଠରେ ପୋଡ଼ିଯିବ । ପଲଣା ସେକେଣ୍ଡକୁ ୧୦୦ ଫୁଟ ଗତି କରେ । ହାତଟି ପୋଡ଼ିଯିବା କଥାକୁ ଜାଣିବାକୁ ଆମକୁ ୧୫୦ ବର୍ଷ ଲାଗିଯିବ । ସେତେ ପରମାୟୁ ଆମର ନାହିଁ ।

ଗତ ଜାନୁଆରୀ ୨ ତାରିଖ ଦିନ ପୃଥିବୀ ସୂର୍ଯ୍ୟଠାରୁ ଅତି ନିକଟରେ ଥିଲା —ଅନ୍ୟ କଥାରେ ପୃଥିବୀର ନିକଟାବସ୍ଥାନ ଘଟିଥିଲା । ନିକଟାବସ୍ଥାନ ବେଳେ ସୂର୍ଯ୍ୟଠାରୁ ପୃଥିବୀର ଦୂରତ୍ୱ ୯୧୫ ଲକ୍ଷ ମାଇଲ । ସେହିପରି ପୃଥିବୀର ମଧ୍ୟ ଦୂରାବସ୍ଥାନ ଘଟେ । ଦୂରାବସ୍ଥାନ କାଳରେ ସୂର୍ଯ୍ୟଠାରୁ ପୃଥିବୀର ଦୂରତ୍ୱ ୯୪୫ ଲକ୍ଷ ମାଇଲ । ଗତ ଜୁଲାଇ ତା ୪ଟାରିଖ ଦିନ ସୂର୍ଯ୍ୟ ଠାରୁ ପୃଥିବୀର ଦୂରତ୍ୱ ଥିଲା ସର୍ବାଧିକ । ଜୁଲାଇ ୪ ତାରିଖ ଦିନ ଅପେକ୍ଷା ଜାନୁୟାରୀ ୨ ତାରିଖ ଦିନ ଆମେ ସୂର୍ଯ୍ୟର ୩୦ ଲକ୍ଷ ମାଇଲ ନିକଟବର୍ତ୍ତୀ ହୋଇଥିଲୁଁ । ସୂର୍ଯ୍ୟଠାରୁ ପୃଥିବୀର ହାରାହାରି ଦୂରତ୍ୱ ୯୩୦ ଲକ୍ଷ ବା ୯୩ ନିୟୁତ ମାଇଲ । ଏକ ନିୟୁତ କେତେ ବଡ଼ ଗୋଟିଏ ସଂଖ୍ୟା ଧାରଣା କରାଯାଉ । କାନ୍ଥ ଘଣ୍ଟାର ପେଣ୍ଡୋଲମ୍ (pendulum) ଯାହାକି ସେକେଣ୍ଡକେ ଥରେ ଦୋଳାୟମାନ ହୁଏ, ଘଣ୍ଟାକୁ ଦୋଳାୟିତ ହୁଏ ୩୬୦୦ ଥର । ଦିନକୁ ୮୬୪୦୦ ଥର, ଦଶ ଦିନରେ ୮୬୪୦୦୦ ଥର । ପାଖାପାଖି ଏକ ନିୟୁତ ଥର ୧୧ ଦିନରେ । ଖିଆ ପିଆ ଦିଗରେ ୩ ଘଣ୍ଟା ଓ ଶୋଇବା ଦିଗରେ ୯ ଘଣ୍ଟା ବ୍ୟୟ କରି ଯଦି ଦିନ ସାରା ସେକେଣ୍ଡକେ ଗୋଟିଏ ଲେଖାଏଁ ସଂଖ୍ୟା ଗଣି ଏକ ନିୟୁତ ପର୍ଯ୍ୟନ୍ତ ଲଗାତାର ଗଣିବାକୁ ହୁଏ ତେବେ ୩ ସପ୍ତାହରୁ ଊର୍ଦ୍ଧ୍ୱ ସମୟ ଲାଗିଯିବ । ସୂର୍ଯ୍ୟଠାରୁ ପୃଥିବୀର ଦୂରତ୍ୱ ହ୍ରାସ ବୃଦ୍ଧି ଘଟିଥାଏ କେବଳ ପୃଥିବୀର କକ୍ଷ (ଯେଉଁ ପଥରେ ଏହା ସୂର୍ଯ୍ୟକୁ ପରିକ୍ରମଣ କରେ) ବୃତ୍ତାକାର ନହୋଇ ଉପବୃତ୍ତାକାର ହୋଇଥିବାରୁ । ସୂର୍ଯ୍ୟଙ୍କ

ଚତୁଃପାର୍ଶ୍ୱରେ କାହିଁକି ଗ୍ରହମାନେ ଉପବୃତ୍ତାକାର ପଥରେ ଗତି କରନ୍ତି, ସେ ବିଷୟ ନିର୍ଦ୍ଧାରଣ କରିଥିଲେ ବୈଜ୍ଞାନିକ ସାର୍ ଆଇଜାକ୍ ନିଉଟନ୍ ।

ଯାହା ହେଉ ପୃଥିବୀର ଏହି ନିକଟାବସ୍ଥାନ ଘଟିଥାଏ ଠିକ୍ ଶୀତ ଋତୁରେ । ତେବେ ସୂର୍ଯ୍ୟଠାରୁ ପୃଥିବୀର ଦୂରତ୍ୱ ତାରତମ୍ୟ ଉପରେ ଋତୁ ପରିବର୍ତ୍ତନ ନିର୍ଭର କରେ ନାହିଁ । ଋତୁ ପରିବର୍ତ୍ତନ ପାଇଁ ଦିବାରାତ୍ରିର ହ୍ରାସବୃଦ୍ଧି ଦାୟୀ; ଏବଂ ଦିବାରାତ୍ରିର ହ୍ରାସବୃଦ୍ଧି ଘଟେ ପୃଥିବୀ ଅକ୍ଷ ଦଣ୍ଡର କକ୍ଷ ତଳ ସହିତ ୬୬ୟ ଡ଼ିଗ୍ରୀରେ ଆନତ ଓ ସର୍ବଦା ନିଜ ଅବସ୍ଥାନର ସାମାନ୍ତରିକତା ରକ୍ଷା ହେତୁ । କିନ୍ତୁ ଏହା ସତ୍ୟ ଶୀତକାଳରେ ପୃଥିବୀ ସୂର୍ଯ୍ୟର ନିକଟବର୍ତ୍ତୀ ଏବଂ ଗ୍ରୀଷ୍ମ କାଳରେ ଦୂରବର୍ତ୍ତୀ ହେବା ଫଳରେ ଆମର ଜଳବାୟୁ ମୃଦୁଭାବାପନ୍ନ ହୋଇ ପାରୁଛି । ମାତ୍ର ଏହା କେବଳ ଉତ୍ତର ଗୋଲାର୍ଦ୍ଧ ପାଇଁ । ଦକ୍ଷିଣ ଗୋଲାର୍ଦ୍ଧରେ ଏହାର ଠିକ୍ ବିପରୀତ ଫଳ ଘଟେ । ଅର୍ଥାତ୍ ଗ୍ରୀଷ୍ମ କାଳ ଅଧିକ ଉତ୍ତପ୍ତ ଏବଂ ଶୀତକାଳ ଅଧିକ ଶୀତଳ ହୁଏ । ଅବଶ୍ୟ ଉଭୟ ଗୋଲାର୍ଦ୍ଧରେ ଜଳଭାଗ, ସ୍ଥଳଭାଗର ତାରତମ୍ୟ ଓ ଅନ୍ୟାନ୍ୟ ଅନେକ କାରଣ ଜଳବାୟୁ ନିୟନ୍ତ୍ରଣରେ ସାହାଯ୍ୟ କରେ ।

ସୂର୍ଯ୍ୟ ଯେତିକି ଉତ୍ତାପ ବିତରଣ କରେ ତାର ଦୁଇଶହ କୋଟି ଭାଗରୁ ଭାଗେ ମାତ୍ର ପୃଥିବୀ ପାଇଥାଏ । ସୂର୍ଯ୍ୟ ଦାନ କରୁଥିବା ଉତ୍ତାପର ପରିମାଣ କେତେ ଅଧିକ କଳ୍ପନା କରାଯାଉ । ପୃଥିବୀରେ ଯେତେ କୋଇଲା ଅଛି ସେ ସବୁକୁ ଠୁଳକରି ଯଦି ଜାଳି ଦିଆଯାଏ, ଯେଉଁ ଉତ୍ତାପ ଉତ୍ପନ୍ନ ହେବ ତାହା ସୂର୍ଯ୍ୟ ବିତରଣ କରୁଥିବା ଉତ୍ତାପର ଦଶହଜାର ଭାଗରୁ ଭାଗେ ମାତ୍ର ହେବ । ଯାହାହେଉ ସାଧାରଣତଃ ଆମକୁ ଯେତେ ଉତ୍ତାପ ମିଳିଥାଏ ପୃଥିବୀର ନିକଟାବସ୍ଥାନ କାଳରେ ତଦପେକ୍ଷା ଶତକଡ଼ା ୭ ଭାଗ ଅଧିକ ଉତ୍ତାପ ମିଳେ । ତେବେ ମଧ୍ୟ କି ଭୀଷଣ ଶୀତ । ତାପମାତ୍ରା ଦୃଷ୍ଟିରୁ ଉତ୍ତର ଗୋଲାର୍ଦ୍ଧପାଇଁ ଜାନୁଆରୀମାସ ଓ ଜୁଲାଇମାସ, ଦୁଇଟି ଗୁରୁତ୍ୱପୂର୍ଣ୍ଣ । କାରଣ ଜାନୁଆରୀମାସ ଶୀତଳତମ ଓ ଜୁଲାଇମାସ ଉଷ୍ଣତମ ।

'ଯେତେବେଳେ ଆମେ ସୂର୍ଯ୍ୟର ନିକଟସ୍ଥ ହେବାକୁ ଲାଗୁ ଅର୍ଥାତ୍ 'ଶୀତକାଳରେ ଜଣାଯାଏ ଯେପରି ସୂର୍ଯ୍ୟ ଆକାଶମାର୍ଗରେ ଖୁବ୍ ଶୀଘ୍ର ବେଗରେ ଗତିକରେ ଏବଂ ଯେତେବେଳେ ଆମେ ସୂର୍ଯ୍ୟଠାରୁ ଦୂରବର୍ତ୍ତୀ ହେଉ ଅର୍ଥାତ୍ ଗ୍ରୀଷ୍ମକାଳରେ ଜଣାଯାଏ ସୂର୍ଯ୍ୟ ଯେପରି ଖୁବ୍ ଧୀରେ ଗତି କରେ । ପୃଥିବୀର ଅର୍ଦ୍ଧେକ ଯାତ୍ରା— ଅକ୍ଟୋବର ତା ୫ରିଖରୁ ଏପ୍ରିଲ ତା ୧ରିଖ ପର୍ଯ୍ୟନ୍ତ—୧୭୮ ଦିନରେ ଏବଂ ଅପରାର୍ଦ୍ଧ ୧୮୭ ଦିନରେ ଶେଷ ହୋଇଥାଏ ।

ଗୋଟିଏ ଘଡ଼ିରୂପେ ମଧ୍ୟ ବିଚାର କଲେ ସୂର୍ଯ୍ୟ ଉତ୍ତମରୂପେ ସମୟ ନିର୍ଦ୍ଦେଶ କରିପାରେ ନାହିଁ । ସୂର୍ଯ୍ୟର ଗତି (ଅବାସ୍ତବ ଗତି) ପଥ ପୃଥିବୀର ବିଷୁବ ବୃତ୍ତରୁ ୨୩½°ରେ ଚଳି ରହିଥିବା ଫଳରେ ସବୁ ବ୍ୟତିକ୍ରମ ଉପୁଜିଥାଏ । ଆଧୁନିକ ଦୁନିଆରେ କାର୍ଯ୍ୟ ଧନ୍ଦା ଚାଲିବା ନିମିତ୍ତ 'ସୂର୍ଯ୍ୟ-ସମୟ' ଉପରେ ନିର୍ଭର କରାଯାଇ ନ ପାରେ ।

କୌଣସି ଏକ ନିର୍ଦ୍ଦିଷ୍ଟ ଅକ୍ଷାଂଶସ୍ଥ ସ୍ଥାନ ପାଇଁ ସାଧାରଣତଃ ତଳଲିଖିତମତେ 'ସୂର୍ଯ୍ୟ-ଘଟିକା' ପ୍ରସ୍ତୁତ କରାଯାଇ ସମୟ ନିରୂପଣ କରାଯାଇଥାଏ । ୧ ବର୍ଗଫୁଟ ପରିମିତ ଖଣ୍ଡିଏ କାଠ ପଟା ଉପରେ ଖଣ୍ଡିଏ କାଗଜ ଲଗି ଦିଆଯାଉ ଏବଂ ଏହି କାଗଜ ଉପରେ ଗୋଟିଏ ବୃତ୍ତ ଅଙ୍କନ କରାଯାଉ । ଏହି ବୃତ୍ତରେ ଗୋଟିଏ ବ୍ୟାସ ନିଆଯାଉ । ଏହାକୁ ଉତ୍ତର ଦକ୍ଷିଣ କରି ରଖାଯାଉ । ବୃତ୍ତର କେନ୍ଦ୍ରରେ ଗୋଟିଏ ସୂଚିକୁ ପ୍ରୋଥିତ କରାଯାଉ ଯେପରି ଏହା ପଟା ସହିତ ସେହି ସ୍ଥାନର ଅକ୍ଷାଂଶ ପରିମିତ କୋଣରେ ଆନତ ହୋଇ ରହିବ । ବର୍ତ୍ତମାନ ସୂଚିର ଶୀର୍ଷ ଭୌଗୋଳିକ ଉତ୍ତରମେରୁ ଦର୍ଶାଇବ ଏବଂ ସୂଚିଟି ପୃଥିବୀର ଅକ୍ଷଦଣ୍ଡ ସହିତ ସମାନ୍ତର ଭାବେ ରହିବ । ପଟାଟିକୁ ଏପରି ସ୍ଥାନରେ ରଖିବାକୁ ହେବ ଯେପରି ଏହା ଉପରେ ସୂର୍ଯ୍ୟ କିରଣ ପଡ଼ି ପାରିବ । ସୂର୍ଯ୍ୟ କିରଣ ପଡିବା ଫଳରେ ସୂଚିର ଯେଉଁ ଛାୟା ଉତ୍ପନ୍ନ ହେବ, ନିର୍ଦ୍ଦିଷ୍ଟ ସମୟରେ ଯଥା :—ପୂର୍ବାହ୍ଣ ୯ଟା, ୧୧ଟା ମଧ୍ୟାହ୍ନ, ଅପରାହ୍ଣ ୩ଟା, ୪ଟା ବେଳେ ଲକ୍ଷ୍ୟ କରାଯାଉ । ପ୍ରତ୍ୟେକ ସମୟରେ ଛାୟାର ଦାଗ ଲକ୍ଷ୍ୟ କରି ବୃତ୍ତର କେନ୍ଦ୍ରଠାରୁ ଗୋଟିଏ ଲେଖାଏଁ ସରଳରେଖା ଟଣାଯାଉ । ଦେଖାଯିବ ଯେ ଛାୟାଟି ନିର୍ଦ୍ଦିଷ୍ଟ ଏକ କୋଣର ବ୍ୟବଧାନ ରଖି ଦାଗ ପରିବର୍ତ୍ତନ କରେ ନାହିଁ । ଏଣୁ ଘଡ଼ିରେ ଘଣ୍ଟାଗୁଡ଼ିକ ସମବ୍ୟବଧାନରେ ଚିହ୍ନିତ ହେଲେ ଭଳି ଆମ ଅକ୍ଷାଂଶରେ 'ସୂର୍ଯ୍ୟ-ଘଟିକା'ରେ ଘଣ୍ଟାଗୁଡ଼ିକ ସମବ୍ୟବଧାନରେ ଚିହ୍ନିତ ହେବ ନାହିଁ ।

ବର୍ଷରେ ୪ ଦିନ ମାତ୍ର 'ସୂର୍ଯ୍ୟ-ଘଟିକା' ପ୍ରକୃତ ସମୟ ଦର୍ଶାଇ ଥାଏ; ଯଥା— ଏପ୍ରିଲ ତା ୧୬ ରିଖରେ, ଜୁନ୍ ତା ୧୪ ରିଖରେ, ସେପ୍ଟେମ୍ବର ତା ୨ ରିଖରେ ଏବଂ




[ଏହି ସଂଖ୍ୟାଠାରୁ ଆମେ ଆମର ପାଠକ ପାଠିକାମାନଙ୍କ ମତାମତ ପ୍ରକାଶ କରିବାପାଇଁ ଏକ ସ୍ୱତନ୍ତ୍ର ବିଭାଗ ଖୋଲୁଛୁ । ଏଥିରେ କୌଣସି ବ୍ୟକ୍ତିଗତ ଆକ୍ଷେପମୂଳକ ଚିଠିପତ୍ର ପ୍ରକାଶ ପାଇବ ନାହିଁ । ଓଡ଼ିଶାର ହିତ ଦୃଷ୍ଟିରୁ ଯେ କୌଣସି ମତାମତ ବା ସମାଲୋଚନା ପ୍ରକାଶ କରାଯିବ । ତା ଛଡ଼ା ସଂସାର ପତ୍ରିକା ସମ୍ବନ୍ଧରେ ଆମର ପାଠକ ପାଠିକାମାନେ ଯେଉଁ ସବୁ ମତାମତ ବ୍ୟକ୍ତ କରିବେ, ତାହା ମଧ୍ୟ ପ୍ରକାଶ ପାଇବ । କୌଣସି ଚିଠିର ମତାମତ ପାଇଁ ଆମେ ଦାୟୀ ନୋହୁଁ ।—ସମ୍ପାଦକ]

## କଦର୍ଯ୍ୟ ଓଡ଼ିଆ ଚିତ୍ରଣ

ଗତ ଫେବୃୟାରୀ ମାସ 'ସଂସାର'ରେ ରେଲ୍ ଷ୍ଟେସନମାନଙ୍କରେ କିଭଳି କଦର୍ଯ୍ୟ ଓଡ଼ିଆ ଅକ୍ଷର ଓ ଭାଷା ଲେଖା ଯାଉଛି ତାହା ସମସ୍ତଙ୍କ ଦୃଷ୍ଟିକୁ ଆଣିଥିଲ । ପ୍ରତ୍ୟେକ ଷ୍ଟେସନମାଷ୍ଟରଙ୍କ ନିକଟରେ କମ୍ପ୍ଲେଣ୍ଟ ବୁକ୍ ରହିଛି । ଷ୍ଟେସନରେ ଏ ଭଳି ଆପତ୍ତିଜନକ ଲେଖା ବା ଅନ୍ୟାନ୍ୟ ଅସୁବିଧା ଦେଖିଲେ ଷ୍ଟେସନମାଷ୍ଟରଙ୍କଠାରୁ ଉକ୍ତ ବହି ମାଗି ତହିଁରେ ନିଜର ଆପତ୍ତି ଲିପିବଦ୍ଧ କଲେ ଶୀଘ୍ର ଫଳ ମିଳେ । ଆଶାକରେ ପ୍ରତ୍ୟେକ ଓଡ଼ିଆ ଭାଇ ଏଥିପ୍ରତି ଦୃଷ୍ଟି ଦେବେ ।

ଓଡ଼ିଶା ପ୍ରଦେଶ ବାହାରର ବହୁ ବ୍ୟବସାୟୀ ନିଜ ବ୍ୟବସାୟର ପ୍ରଚୁର ଓ ପ୍ରସାର ନିମନ୍ତେ ଓଡ଼ିଆରେ ବିଜ୍ଞାପନ ଦିଅନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ କଦର୍ଯ୍ୟ ଓଡ଼ିଆ ଭାଷା ଓ ଅକ୍ଷରରେ ଏଭଳି ବିଜ୍ଞାପନ ଓ ନାମ ଲେଖିଥାନ୍ତି, ଯାହା ଦେଖିଲେ ଏ ଭଳି ବ୍ୟବସାୟୀଙ୍କ ପ୍ରତି କଠୋର ଶାସ୍ତି ବିଧାନ ନିମନ୍ତେ କେହି ପଛାଇବା ଉଚିତ ନୁହେଁ । ଓଡ଼ିଶା ପ୍ରଦେଶ ଓ ଓଡ଼ିଆ ଲୋକଙ୍କୁ ଠକି ଭଣ୍ଡି ବର୍ଷକୁ ଲକ୍ଷ ଲକ୍ଷ ଟଙ୍କା ବ୍ୟବସାୟରେ ଲୁଟି ନେଉଛନ୍ତି, ମଧ୍ୟ ଏ ଭଳି ବ୍ୟବହାର ପ୍ରତି ସେମାନଙ୍କର ଶୋଚନା ନାହିଁ। ଆମ୍ଭେମାନେ ଟିକିଏ ଲକ୍ଷ୍ୟ ରଖିଲେ ଏ ଭଳି ବିଜ୍ଞାପନରେ ଲେଖା ଅଦ୍ଭୁତ ପ୍ରତିଦାନ ଦେଖିବାକୁ ପାଇବା । ଲକ୍ଷ୍ମୀ ବିଳାସ ତେଲ, ଡୋଲ୍ କୋଟର ମଲମ, ଇଲ୍ଆସ୍ ଗ୍ଲୁ, ବେଦନାନିଗ୍ରହ ରସ, ପ୍ରଭୃତି ଅନେକ ସ୍ଥାନରେ ଅନେକ କଷ୍ଟ ଦୃଷ୍ଟିରେ ପଡ଼ିବ । ଏ ଭଳି ବ୍ୟବସାୟୀଦାରଙ୍କୁ ମୁଁ ବ୍ୟକ୍ତିଗତ ପତ୍ର ଦେଇ ମଧ୍ୟ କୌଣସି ଉତ୍ତର ବା ପ୍ରତିକାର ପାଇନାହିଁ । ଗଭୀର ଦୁଃଖର ବିଷୟ ଆମ୍ଭମାନଙ୍କର ଓଡ଼ିଆ ପତ୍ର ପତ୍ରିକା-ଗୁଡ଼ିକର ପରିଚାଳକମାନେ ଅର୍ଥ ଲୋଭରେ ଏ ଭଳି କୁତ୍ସିତ ଓଡ଼ିଆ ଭାଷା ଓ ଲେଖାର ବ୍ଲକ୍ ସେମାନଙ୍କ ପତ୍ର ପତ୍ରିକାରେ ଛପାଇବାକୁ କୁଣ୍ଠା ବୋଧ କରନ୍ତି ନାହିଁ । ଆମ୍ଭମାନଙ୍କର ବିଶିଷ୍ଟ ଦୈନିକ ସମ୍ବାଦପତ୍ର 'ସମାଜ'ରେ ଏ ଭଳି ବିଜ୍ଞାପନ ଦେଖି ମୁଁ ଏକାଧିକବାର 'ସମାଜ' ସମ୍ପାଦକଙ୍କ ଦୃଷ୍ଟି ଆକର୍ଷଣ କରି ପ୍ରତିକାର ଲୋଡ଼ିଛି, କିନ୍ତୁ ଉତ୍କଳମଣି ଗୋପବନ୍ଧୁଙ୍କର ପ୍ରତିଷ୍ଠାନର ଦୃଷ୍ଟିକୋଣ ବଦଳି ଥିବାରୁ ତାହାଁର ଯଥାର୍ଥ ପ୍ରତିକାର ଦେଖୁନାହିଁ ।

ବଙ୍ଗଳା ପତ୍ର ପତ୍ରିକା, ଚଳଚିତ୍ର ଓ ବେତାର କେନ୍ଦ୍ରରେ ଓଡ଼ିଆଙ୍କର ଏ ଭଳି ଅବମାନନା ଓ ଅପମାନ ଲାଗିରହିଛି । 'ଓଡ଼ିଶା' ଓ 'ଓଡ଼ିଆ' କହିବା ...

( ୨୫ ପୃଷ୍ଠା ଦେଖ )

ବଢ଼ିଦିନରେ । ମାତ୍ର ଅନ୍ୟ ଦିନରେ ଏହା ସାଂଘାତିକ ପ୍ରମାଦପୂର୍ଣ୍ଣ ସମୟ ଦର୍ଶାଇଥାଏ । ଏପରିକି ଫେବୃୟାରି ତା ୧୨ ରିଖ ଦିନ ଏହି ସମୟ ପ୍ରକୃତ ସମୟର ୧୪୍ୟ ମିନିଟ ପଛୁଆ ଥାଏ ଏବଂ ନଭେମ୍ବର ତା ୪ ରିଖରେ ୧୦୍ୟ ମିନିଟ ଆଗୁଆ ହୋଇଥାଏ । ଆଗରୁ କୁହାଯାଇଛି ଯେ 'ସୂର୍ଯ୍ୟ-ଘଟିକା'ରେ ମିଳୁଥିବା ଛାୟାହିଁ ପ୍ରକୃତ ସୂର୍ଯ୍ୟ ଦ୍ୱାରା ଉତ୍ପନ୍ନ ହୋଇଥାଏ । କିନ୍ତୁ ପ୍ରକୃତ ସୂର୍ଯ୍ୟର କାର୍ଯ୍ୟ ସନ୍ତୋଷଜନକ ନ ହେବାରୁ ଆମକୁ ଏକ କାଳ୍ପନିକ ସୂର୍ଯ୍ୟ ନିର୍ଣ୍ଣୟ କରିବାକୁ ହେଲା । ଏହି କାଳ୍ପନିକ ସୂର୍ଯ୍ୟକୁ ହାରାହାରି ସୂର୍ଯ୍ୟ (Mean sun) ବୋଲାଯାଏ । ଏହା ସ୍ଥିର ଗତିରେ ବିଷୁବ ବୃତ୍ତ ଦେଇ ଗତି କରେ । ଅନାୟାସରେ ଆବିଷ୍କୃତ ଏହି କଳ୍ପିତ ଓ ଶୃଙ୍ଖଳିତ ସୂର୍ଯ୍ୟ ସହିତ ଘଡ଼ି ଇତ୍ୟାଦିର ସମୟ ମିଳା ଯାଇଥାଏ । ଏହି ସମୟକୁ ହାରାହାରି ସମୟ (Mean time) ବୋଲଯାଏ ।

—୦—

# ୧୫୦ ଭାଷାରେ ଟାଇପ୍ ରାଇଟର

ଶ୍ରୀ ବିପିନବିହାରୀ ମହାନ୍ତି

ନ୍ୟୁୟର୍କର ଫୁଲ୍‌ଟନ୍ ଷ୍ଟ୍ରୀଟରେ ଏକ ସାଧାରଣ ଘର ଆଗରେ ଗୋଟିଏ ପୁରୁଣା ସାଇନ୍‌ବୋର୍ଡ ଲଗାଯାଇଛି । ସେଥିରେ ଲେଖାଅଛି "ମାର୍ଟିନ ଟାଇଟେଲ୍" । ସେଠାରେ ସବୁପ୍ରକାର ପୁରୁଣା ଟାଇପ୍‌ରାଇଟାର ମରାମତି ହୁଏ ଓ ନୂଆ ଟାଇପ୍‌ରାଇଟାର ତିଆରି କରାଯାଏ ।

ଏହି ଦୋକାନରେ କୌଣସି ଆଧୁନିକ ସାଜସଜ୍ଜାର ସାମଗ୍ରୀ ଦେଖିବାକୁ ମିଳେ ନାହିଁ । ଏକ ଛୋଟ ବ୍ଲକ୍‌ରେ ଟାଇଟେଲଙ୍କ କାରଖାନା ରହିଛି ଯେଉଁଠି ଏଗାର ଜଣ କୁଶଳୀ କାରିଗର ଦେଶ ବିଦେଶରୁ ଆସୁଥିବା ଅର୍ଡ଼ରକୁ ପୂରା କରିବାପାଇଁ ଦିନରାତି ନୂଆ ଟାଇପ୍‌ରାଇଟାର ତିଆରି କରିବାରେ ବ୍ୟସ୍ତ ରହନ୍ତି । ଏମାନେ କେବଳ ଯନ୍ତ୍ରବିଦ୍ ନୁହନ୍ତି, ଭାଷାବିଦ୍ ମଧ୍ୟ । ପୃଥିବୀର ପ୍ରାୟ ସମସ୍ତ ଭାଷା-ଗୁଡ଼ିକର ବର୍ଣ୍ଣମାଳା ଓ ସଂଖ୍ୟା ସମ୍ବନ୍ଧରେ ଏମାନଙ୍କର ପୂର୍ଣ୍ଣ ଜ୍ଞାନ ରହିଛି ।

ମାର୍ଟିନ୍ ଟାଇଟେଲଙ୍କ ଦୋକାନରେ ଏପରି ଭାଷାରେ ଟାଇପ୍‌ରାଇଟାର ତିଆରି ହେଉଛି ଯାହାର ନାମ ସହିତ ମଧ୍ୟ ଅଧିକାଂଶ ଲୋକ ପରିଚିତ ନୁହନ୍ତି । ସୁଦାନର କେତେ-କାଂଶରେ ପ୍ରଚଳିତ ଭାଷା 'ଡିଙ୍କା', ଉତ୍ତର ଆମେରିକାର ଆଦି-ବାସୀଙ୍କର ଜଙ୍ଗଲିଭାଷା 'ପ୍ରୀ' ଓ ଜେରୁଜେଲମ୍‌ର ପ୍ରାଚୀନ 'ହିବ୍ରୁ'ରେ ମଧ୍ୟ ଟାଇପ୍‌ରାଇଟାର ସେଠାରେ ତିଆରି ହୁଏ, ମାତ୍ର ୪୮ ଘଣ୍ଟା ସମୟ ମଧ୍ୟରେ ।

ସମସ୍ତ ଆମେରିକାରେ ମାର୍ଟିନ୍ ଟାଇଟେଲ୍ ଟାଇପ୍-ରାଇଟାର ସଜାଡ଼ିବାରେ ଓ ତିଆରି କରିବାରେ ପ୍ରସିଦ୍ଧ । ଦେଶ ବିଦେଶରୁ ଦୈନିକ ଅନେକ ପତ୍ର ତାଙ୍କ ପାଖକୁ ଆସେ । କେହି କେହି କେବଳ "ଟାଇଟେଲ, ଟାଇପ୍-ରାଇଟର ନିର୍ମାତା, ଆମେରିକା" ଲେଖି ଚିଠି ଦେଲେ ଡାକଯୋଗେ ତାହା ତାଙ୍କ ପାଖରେ ପହଞ୍ଚି ଯାଏ ।

ଗୋଟିଏ ବଡ଼ କୋଠରୀର କାନ୍ଥରେ ଦୁନିଆଁର ୧୫୦ ରୁ ଅଧିକ ଭାଷାର ବର୍ଣ୍ଣମାଳା ସଜାଡ଼ି ନକ୍‌ସାରେ ସେଠାରେ ରଖା ଯାଇଛି । ଏହି ବର୍ଣ୍ଣମାଳା ଗୁଡ଼ିକର ତଳେ ଲଗାଇଥିବା ଟାଇପ୍, ଟାଇଟେଲ୍‌ଙ୍କ ପାଖରେ ସବୁବେଳେ ପ୍ରସ୍ତୁତ ରହିଛି । ଅଧିକାଂଶ ଦେଶର ବହୁସଂଖ୍ୟକ ପ୍ରତିନିଧି ନିଜ ଭାଷାରେ ଟାଇପ୍‌ରାଇଟାର କରେଇବାକୁ ଏଠାକୁ ଆସିଥାଆନ୍ତି । ଏକ ଭାରତୀୟ ପ୍ରତିନିଧିମଣ୍ଡଳ କେତେକ ବର୍ଷ ପୂର୍ବେ "ଗୁରଶାଲମ୍" ଭାଷାରେ ସର୍ବପ୍ରଥମ ଟାଇପ୍-ରାଇଟାର ଓ ବଙ୍ଗଳା ଭାଷାରେ ଟାଇପ୍‌ରାଇଟାରର ଉନ୍ନତି ସଂସ୍କରଣ ଟାଇଟେଲଙ୍କ ଜଗତ ବିଖ୍ୟାତ ଦୋକାନରେ ତିଆରି କରି ନେଇଥିଲେ ।

ଟାଇଟେଲ୍ ଅତି ଜଟିଳ ଟାଇପ୍‌ରାଇଟାରକୁ ମଧ୍ୟ ଅଳ୍ପ ସମୟ ମଧ୍ୟରେ ନୂଆ କରି ଗଢ଼ି ଦେଇପାରନ୍ତି । ଜଣେ ବିଶ୍ୱ-ବିଖ୍ୟାତ ବ୍ରିଜ ଖେଳାଳୀଙ୍କ ପାଇଁ ଟାଇଟେଲ୍ ଏକ ଟାଇପ୍-ରାଇଟାର ଗଢ଼ି ଦେଇଥିଲେ । ସେଥିରେ ଇଂରେଜୀ ବର୍ଣ୍ଣ-ମାଳା ଓ ସଂଖ୍ୟା ବ୍ୟତୀତ ତାସ୍‌ର ଗୁଟିପାଞ୍ଚ (ନାଲିପାନ, କଳାପାନ, ଚିଡ଼ିଆ ଓ ଠିକିରି) ଛପିବାର ମଧ୍ୟ ବ୍ୟବସ୍ଥା ରହିଛି ।

ଏହି ବ୍ୟବସାୟରେ ଟାଇଟେଲଙ୍କୁ ପ୍ରତିବର୍ଷ ପ୍ରାୟ ଲକ୍ଷାଧିକ ଡୋଲାର ମିଳେ । ଭଲ ଟାଇପ ରାଇଟାରକୁ ସେ ଦଶ ହଜାର ଡୋଲାରରେ (୧ ଡୋଲାର=ପ୍ରାୟ ୫ ଟଙ୍କା) ମଧ୍ୟ ବିକ୍ରି କରନ୍ତି । ୧୯୩୭ ସାଲରେ ସେ ଜଣେ ଧନୀ ଗ୍ରାହକଙ୍କପାଇଁ ପାଞ୍ଚଦିନ ମାତ୍ର ପରିଶ୍ରମ କରି ବାର୍ମିଜ୍ ଭାଷାରେ ଏକ ଟାଇପ୍‌ରାଇଟର ତିଆରି କରି ଦେଇଥିଲେ ଏବଂ ତାହାର ମୂଲ୍ୟ ସ୍ୱରୂପ ସେ ଛଅଗୋଟି ଇଂରେଜୀ ଟାଇପ୍‌ରାଇଟରର ମୂଲ୍ୟ ପାଇଥିଲେ ।

ପ୍ରତ୍ୟେକ ଭାଷାର ବର୍ଣ୍ଣମାଳାରେ ନିର୍ଦ୍ଦିଷ୍ଟ ଅକ୍ଷର ଓ ସଂଖ୍ୟା ଥାଏ । ସେହି ଅକ୍ଷର ଓ ସଂଖ୍ୟା ଅନୁସାରେ ଟାଇପ୍‌ରାଇଟରରେ 'କୀ' ତିଆରି ହୁଏ । ଏହି ଅକ୍ଷର ବା ସଂଖ୍ୟା ଯେତେ କମ୍ ହେବ ଟାଇପ୍‌ରାଇଟାରର ତିଆରି ସେତେ ସହଜ ହେବ । ଇଂରେଜୀ ଓ ଫ୍ରେଞ୍ଚ୍ ଟାଇପ୍‌ରାଇଟର ତିଆରି ସବୁଠାରୁ ସହଜ; କାରଣ ଏହି ଦୁଇ ଭାଷାରେ ମାତ୍ର ୨୬ ଗୋଟି ଅକ୍ଷର ଥାଏ । ଅନ୍ୟାନ୍ୟ ୟୁରୋପୀୟ ଭାଷା ମଧ୍ୟ ଏହି ଶ୍ରେଣୀର । ସଂସ୍କୃତ, ପାଲି, ହିନ୍ଦୀ, ବଙ୍ଗଳା, ଓଡ଼ିଆ ଓ ଅନ୍ୟାନ୍ୟ ଭାରତୀୟ ଭାଷା ଏହି ଯେଉଁଥିରେ ହ୍ରସ୍ୱ ଓ ଦୀର୍ଘ ମାତ୍ରା, ସଂଯୁକ୍ତାକ୍ଷର ଇତ୍ୟାଦି ରହିଛି ତାହା ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଭୁକ୍ତ । କିନ୍ତୁ ଆରବୀ ପରିବାରର ସମସ୍ତ ଭାଷା ଯଥା :— ଫାର୍ସି ଓ

ଉର୍ଦ୍ଦୁ, ସାଇପ୍ରୁନ ଓ ମିସ୍ତ୍ରୀ, ଆଧୁନିକ ମେହଲବୀ ଓ ପଷ୍ଟୋ ଭାରତୀୟ ଭାଷାଠାରୁ କେତେଗୁଣ କଷ୍ଟ ତେଣୁ ଏହିସବୁ ଭାଷାରେ ଟାଇପ୍‌ରାଇଟର ତିଆରି କରିବାକୁ ଟାଇଟେଲ୍‌ଙ୍କ କାରିଗରମାନଙ୍କୁ ଅନେକ ପରିଶ୍ରମ କରିବାକୁ ପଡ଼େ । କିନ୍ତୁ ସବୁଠାରୁ କଷ୍ଟ ସ୍ୱୀକାର କରିବାକୁ ହୋଇଥାଏ ଚାଇନୀଜ୍ ଭାଷାରେ ଟାଇପ୍‌ରାଇଟର ତିଆରି କରିବାକୁ । କାରଣ ଚାଇନୀଜ୍ ଭାଷାରେ ବର୍ଣ୍ଣମାଳା ୭ ହଜାରରୁ ଅଧିକ ଅକ୍ଷର ବିଶିଷ୍ଟ ଓ ପ୍ରତ୍ୟେକ ଅକ୍ଷରର ଆକାର ମଧ୍ୟ ଅଦ୍ଭୁତ ଧରଣର । ବ୍ୟୟସାଧ୍ୟ ଓ କଷ୍ଟସାଧ୍ୟ ହେତୁ ଚାଇନୀଜ୍ ଭାଷାରେ ଭଲ ଟାଇପ୍‌ରାଇଟର ହୋଇ ପାରୁନାହିଁ । ଟାଇଟେଲ୍ କେତେବର୍ଷ ପରିଶ୍ରମ କରି କୌଣସି ଗ୍ରାହକର ଅନୁରୋଧ କ୍ରମେ ଗୋଟିଏ ଚାଇନୀଜ୍ ଟାଇପ୍‌ରାଇଟରର ମଡେଲ୍ ତିଆରି କରିଥିଲେ ଯାହାର ଆକାର ଏକ ପିଆନୋ ପରି ହୋଇଥିଲା ।

—o—

( ୭୩ ପୃଷ୍ଠାର ଅବଶିଷ୍ଟାଂଶ )

ଲେଖିବାକୁ ସେମାନଙ୍କୁ ଲାଜ ମାଡେ । କେନ୍ଦ୍ର ସରକାରଙ୍କ ବେତାର ପ୍ରତିଷ୍ଠାନ ମଧ୍ୟ 'ଉଡ଼ିଷ୍ୟା' ଓ 'ଉଡ଼ିଆ' କହନ୍ତି । ବଙ୍ଗଳା ପତ୍ର ପତ୍ରିକାରେ ଓଡ଼ିଆଙ୍କ ଜୀବନୀ, ନାନାଦି ହାସ୍ୟାସ୍ପଦ ଗଳ୍ପ, କବିତା, କାର୍ଟୁନ୍ ଚିତ୍ର ସମସ୍ତଙ୍କ ଆଖିରେ ପଡ଼ିଥିବ; ଯାହାର କି ବକି ଓଡ଼ିଶା ଓ ଓଡ଼ିଆଙ୍କ ଭିତରେ କମ୍ ନୁହେଁ । ଓଡ଼ିଆ କୁଲି, ମାଲି, ଠାକୁର ( ପୂଜାରୀ ), ପଣ୍ଡା ବଙ୍ଗାଳିମାନଙ୍କ ପାରିବାରିକ ଜୀବନରେ କେତେ ଦୂର ସାହାଯ୍ୟ କରୁଛନ୍ତି, ସେ କଥା ସେମାନେ ମର୍ମେ ମର୍ମେ ବେଶ ଅନୁଭବ କରି ପାରୁଥିବେ ଏବଂ ଓଡ଼ିଆର ସାହାଯ୍ୟ ଯେ ସେମାନଙ୍କ ଜୀବନ ବିକାଶର ଏକ ଅପରିହାର୍ଯ୍ୟ ଅଙ୍ଗ ଏ କଥା ସେମାନେ ଅବଶ୍ୟ ସ୍ୱୀକାର କରିବେ । ବଙ୍ଗାଳିମାନେ ଓଡ଼ିଶାରୁ ଯାହାକି ସାହାଯ୍ୟ ସହାନୁଭୂତି ପାଉଛନ୍ତି, ତା ତୁଳନାରେ ଅନ୍ୟ କୌଣସି ପ୍ରଦେଶରୁ ଏକସ ଏତେ ସୁବିଧା ପାନ୍ତି ନାହିଁ । ତା' ସତ୍ତ୍ୱେ ସେମାନଙ୍କ ଏଭଳି ବ୍ୟବହାର ପ୍ରତି ପ୍ରତ୍ୟେକ ଓଡ଼ିଆ ସଜାଗ ହେବା ଉଚିତ । ଏ ସଂକ୍ରାନ୍ତରେ ଗୋଟିଏ ଦୁଇଟି ଉଦାହରଣ ଦେବା ଉଚିତ ମନେ କରୁଛି ।

(୧) ତା ୨୭ । ୯ । ୫୩ ରବିବାର "ଦୈନିକ ଯୁଗାନ୍ତର" ପତ୍ରିକାରେ ପ୍ରଥମ ପୃଷ୍ଠା (ଉପରେ) ଗୋଟିଏ କାର୍ଟୁନ ଚିତ୍ର ପ୍ରକାଶ ପାଇଥିଲା । ଓଡ଼ିଶାରୁ ପଶ୍ଚିମ ବଙ୍ଗକୁ ଯେଉଁ ଚାଉଳ ଯୋଗାଇ ଦିଆଯାଉଥିଲା ତହିଁରୁ ପଚା ଗନ୍ଧ ବାହାରୁଥିବାରୁ ଜନସାଧାରଣଙ୍କ ତରଫରୁ ଆପତ୍ତି ହେବାରୁ ପଶ୍ଚିମ ବଙ୍ଗର ଖାଦ୍ୟ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସେନ୍ ଉକ୍ତ ଚାଉଳ ଭାତ ପରୀକ୍ଷା କରିଥିଲେ, କାର୍ଟୁନ୍ ଚିତ୍ରର ଉପରେ ଲେଖା ଅଛି :—

"ପ୍ରଭୁ ଏହି ର୍ୟା-ଶ-ନ ଚାଉଳ ଅଛି !
ତେଁଇ ଗନ୍ଧ ବାହାର ହଉଛନ୍ତି ।"
(କି ଭଲ ଶୁଦ୍ଧ ଓଡ଼ିଆ ପାଠକ ବୁଝନ୍ତୁ)

ଚିତ୍ରରେ ଓଡ଼ିଆ ଠାକୁର (ପୂଜାରୀ) ଭାତ ରାନ୍ଧି ଶ୍ରୀ ପ୍ରଫୁଲ୍ଲ ସେନଙ୍କୁ ପରଷୁଛି ଓ ସେ ଭାତ ଗନ୍ଧରୁ ରକ୍ଷା ପାଇବା ପାଇଁ ନାକକୁ ରୁମାଲରେ ଚିପି ଧରିଛନ୍ତି ।

ପଶ୍ଚିମ ବଙ୍ଗକୁ ଖାଦ୍ୟ ସଙ୍କଟରୁ ରକ୍ଷା କରିବାକୁ ଯାଇ ଓଡ଼ିଆଙ୍କୁ ଏ ସାର୍ଟିଫିକେଟ୍ ମିଳିଛି ।

(୨) ମାସିକ ବସୁମତୀ (୧ମ ଖଣ୍ଡ ୪ର୍ଥ ସଂଖ୍ୟା) ଶ୍ରାବଣ ୧୩୫୦-୬୫୪ ପୃଷ୍ଠା

"କଳିଙ୍ଗ ରାଜ୍ୟର ପ୍ରତିଷ୍ଠାତା ବାଙ୍ଗାଲି"

It was the Bengalies who founded the Kalinga Empire whence they spread their conquests beyond the seas and colonised Tara and other islands of the Indian Archipelago.

—Dawn 1909.

ଉକ୍ତ ବିଷୟଗୁଡ଼ିକ ପ୍ରତି ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ମୁଁ ଓଡ଼ିଶାର କେତୋଟି ବିଶିଷ୍ଟ ସଂବାଦପତ୍ରର ସଂପାଦକମାନଙ୍କୁ ଅନୁରୋଧ କରିଥିଲି । ମୋ ଚିଠି ପ୍ରକାଶ କରିବା ତ ଦୂରର କଥା ତହିଁର ପ୍ରତିବାଦ କରି ସଂପାଦକଙ୍କ କଲମରୁ ଧାଡ଼ିଏ ଲେଖା ଦେଖିବାକୁ ମିଳିଲା ନାହିଁ ।

ବଙ୍ଗଳା ଚଳଚିତ୍ର "ଜନକ ନନ୍ଦିନୀ" ଚିତ୍ରରେ କଦର୍ଯ୍ୟ ଓଡ଼ିଆ ଚରିତ୍ରରୂପରେ "ଜୟଦେବ" "ଶଶୁରବାଡ଼ି" ପ୍ରଭୃତି ଛବିରେ ଓଡ଼ିଆର କଦର୍ଯ୍ୟ ଚିତ୍ରଣ ହୋଇଛି ।

ସୁଖର 'ବିଷୟ ଜନସାଧାରଣଙ୍କ ଆମନ୍ତ୍ର ଉପରେ ଓଡ଼ିଶାରେ "ଶଶୁରବାଡ଼ି" ଚିତ୍ର ପ୍ରଦର୍ଶନ ସରକାର ବନ୍ଦ କରିଛନ୍ତି । କିନ୍ତୁ ଏଭଳି ଚିତ୍ର କେବଳ ଓଡ଼ିଶାରେ ବନ୍ଧ ନ କରି ସମୂଳେ ନଷ୍ଟ କରି ପରିଚାଳକଙ୍କୁ ଆଇନତଃ ଦଣ୍ଡିତ କରିବା ଦରକାର ! ଜନସାଧାରଣଙ୍କ ତରଫରୁ ଉକ୍ତ ସମସ୍ତ ବିଷୟ ସରକାରଙ୍କ ଦୃଷ୍ଟିକୁ ଅଣାଯାଇ ତହିଁର ଉପଯୁକ୍ତ ପ୍ରତିକାର ହେବା ଉଚିତ ।

ଆଶାକରେଁ ଓଡ଼ିଆ ଭାଇମାନେ ଆଉ ଶୋଇ ନ ରହି ଏ ସବୁ ବିଷୟ ପ୍ରତି ଦୃଷ୍ଟି ଦେଇ ଜାତି ଓ ଭାଷାର ଶ୍ରୀ ଅକ୍ଷୁଣ୍ଣ ରଖିବେ ।

ଶ୍ରୀ ଦେବେନ୍ଦ୍ର ନାଥ ପଟ୍ଟନାୟକ,
ଯୁଗ୍ମ ସଂପାଦକ, ଗୋପବନ୍ଧୁ ସାଂସ୍କୃତିକ ସମିତି,
ବାଦାମ ପାହାଡ଼

—୦—




## ଅଦ୍ଭୁତ ଚିଡ଼ିଆଖାନା

ନିଉୟର୍କ ସହରରୁ ଅଳ୍ପ ଦୂରରେ ଗୋଟିଏ ବିଚିତ୍ର ଧରଣର ଚିଡ଼ିଆଖାନା ଅଛି । ଏହାକୁ ଚିଡ଼ିଆଖାନା କହିଲେ ଠିକ୍ ହେବ ନାହିଁ, କାରଣ ଏହା ଏକ ବ୍ୟବସାୟ ପ୍ରତିଷ୍ଠାନ । ଚିଡ଼ିଆଖାନାରେ ଯେପରି ନାନା ପ୍ରକାର ଜୀବ ଜନ୍ତୁ ପୋଷା ହୋଇ ରଖାଯାଇଥାନ୍ତି, ଏଠାରେ ସେହିପରି ଥାଆନ୍ତି ସତ, ମାତ୍ର ଭିନ୍ନ ଉଦ୍ଦେଶ୍ୟରେ । ଯାହାର ଯେତେବେଳେ ଦରକାର ହୁଏ, ସେ ଗ୍ରାହକମାନେ ନିର୍ଦ୍ଦିଷ୍ଟ ଖର୍ଚ୍ଚ ଦେଇ ସେଠାରୁ ଉକ୍ତ ଜୀବଜନ୍ତୁଙ୍କୁ ଭଡ଼ା ନେଇପାରେ ।

ଉକ୍ତ ଅନୁଷ୍ଠାନର ଅଫିସରେ ଏହିଭଳି ଫୋନ ଡାକ ପ୍ରତିଦିନ ପଡ଼େ—'ଶୀଘ୍ର ଦୁଇଟି ସାଇବେରିଆର ଧଳା ଭାଲୁ ପଠାଅ । ଆମେ ଗୋଟିଏ ମେରୁ ଅଞ୍ଚଳ ଦୃଶ୍ୟର ଛବି ଉଠାଉଛୁ, ତେଣୁ ବାସ୍ତବତାର ଆଭରଣ ଦେବାପାଇଁ ଧଳାଭାଲୁ ଦରକାର ।' 'ଆମେ ଗୋଟିଏ ଜଙ୍ଗଲ ଗଳ୍ପର ଫିଲମ୍ ଉଠାଉଛୁ । ଗଛରୁ ଝୁଲୁଥିବା ୧୦ ଫୁଟ ଲମ୍ବର ବୋଡ଼ା କିମ୍ବା ପାଇଥନ୍ ସାପଟିଏ ପଠାଇ ପାରିବ କି ?'

ଏହାଛଡ଼ା ସମୟେ ସମୟେ ମାଙ୍କଡ଼, ଓଟ, ସିଂହଛୁଆ, ଗଧ ଓ କୁକୁର ମଧ୍ୟ ଆବଶ୍ୟକ ହୁଅନ୍ତି । ଧର ପିଲାମାନଙ୍କର କୌଣସି ଏକ ମେଳା ହୋଇଛି । ସେମାନଙ୍କର ଚିତ୍ତ ବିନୋଦନ ପାଇଁ ହଠାତ୍ ପାଞ୍ଚମାଙ୍କଡ଼ ଦରକାର । ଫୋନରେ ଖବର ଦେଲାମାତ୍ରେ ଉକ୍ତ ଅନୁଷ୍ଠାନ ମାଙ୍କଡ଼ ପଠାଇଦେବେ । ଜୀବଜନ୍ତୁମାନଙ୍କୁ ପଠାଇଲାବେଳେ ସେମାନଙ୍କୁ ରକ୍ଷକଙ୍କ ସହ ପଠାଯାଇଥାଏ । ରକ୍ଷକମାନେ ଦେଖନ୍ତି, ଗ୍ରାହକ ଯେଉଁ ଉଦ୍ଦେଶ୍ୟରେ ଜୀବମାନଙ୍କୁ ମଗାଇଛି ତାହା ଯେପରି ଠିକ୍‌ରୂପେ ସାଧିତ ହୁଏ ଓ ଜୀବମାନେ ସେଠାରେ କୌଣସି ଗଣ୍ଡଗୋଳ ନ କରନ୍ତି ।

## ବିଚିତ୍ର ଖବରକାଗଜ

ବୋଷ୍ଟନ ସହରରୁ 'The Weekly News' ନାମକ ଏକ ସମ୍ବାଦପତ୍ର ପ୍ରକାଶିତ ହୁଏ । ଏହା ଅନ୍ଧଙ୍କ ୨୭ ବର୍ଷ ହେଲା ପ୍ରକାଶ ପାଇ ଆସୁଅଛି । ଏହି ପତ୍ରିକା ଅନ୍ଧମାନଙ୍କ ପାଇଁ ଅଭିପ୍ରେତ । ଏହାର ପ୍ରତିଷ୍ଠାତା ଫ୍ରାନ୍‌ସିସ୍ ବି ଅୟେରବିଙ୍ଗ ବାଲ୍ୟକାଳରୁ ଦୃଷ୍ଟିଶକ୍ତି ହରାଇ ଅନ୍ଧ ହୋଇ ଯାଇଥିଲେ । ବ୍ରେଲ ଅକ୍ଷରରେ ଏହି ପତ୍ରିକା ଛପାଯାଏ । ଆରମ୍ଭ ବେଳେ ଏହାର ଗ୍ରାହକ ଥିଲେ ୨ଶହ ଜଣ କିନ୍ତୁ ବର୍ତ୍ତମାନ ପ୍ରାୟ ୨୫୦୦ ଖଣ୍ଡ ପତ୍ରିକା କଟି ଯାଉଛି ।

—୦—

## ବୁଦ୍ଧି ପରୀକ୍ଷା ଉତ୍ତର

୧ । କ) ଖନା ହୁଏ
ଖ) ସେମାନେ ଏକ ମହତ୍ତ୍ୱ କର୍ତ୍ତବ୍ୟ କରୁଅଛନ୍ତି ।
୨ । ମଦ୍ରମବନ୍ଧ
୩ । ସେ ଦାଡ଼ି ରଖିଥିଲେ— ମୋଟେ ଖିଅର ହେଉ ନ ଥିଲେ ।
୪ । ୫୧ ବର୍ଷ ।
୫ । ମୂଳ ସଂଖ୍ୟାଟି ଠିକ୍ ଓଲଟି ଯିବ ।

—୦—

# ଆପଣ ଯାହା ଜାଣିବାକୁ ଚାହାନ୍ତି

[୧ । ଗ୍ରାହକ ନମ୍ବର ନ ଦେଲେ ଉତ୍ତର ପାଇବେ ନାହିଁ । ଯେଉଁମାନେ ଏଜେଣ୍ଟଙ୍କଠାରୁ ନିୟମିତ ପତ୍ରିକା କିଣନ୍ତି, ସେମାନେ ଏଜେଣ୍ଟଙ୍କ ନାମ ସହ ପ୍ରଶ୍ନ ପଚାରି ପାରିବେ ।

୨ । ଇଂରାଜୀ ମାସର ୨୦ ତାରିଖ ପୂର୍ବରୁ ପ୍ରଶ୍ନଗୁଡ଼ିକ ଆମର ହସ୍ତଗତ ହେବା ଆବଶ୍ୟକ ।

୩ । ଆପଣଙ୍କ ପ୍ରଶ୍ନର ଉତ୍ତର କାହିଁକି ଦିଆ ନ ଗଲା, ତାର କାରଣ ଦର୍ଶାଇବାକୁ ଆମେ ବାଧ୍ୟ ନୋହୁଁ ।

୪ । ପ୍ରଶ୍ନ ସଙ୍ଗେ ଅନ୍ୟ କିଛି ଲେଖିବେ ନାହିଁ ।]

୧ । ଭାଗବତ ସାହୁ, ଜଗନ୍ନାଥ ପାଠାଗାର

ପ୍ର—ସମ୍ବାଦ ପତ୍ରରେ ଦିଆଯାଉଥିବା ବିଜ୍ଞାପନ ତଳେ ସ୍ଥାନେ ସ୍ଥାନେ ନିର୍ଦ୍ଦିଷ୍ଟ ସଂଖ୍ୟା ବା ସଙ୍କେତ ଦିଆଯାଇଥାଏ କାହିଁକି ?

ଉ—ଏହା ସମ୍ବାଦପତ୍ର ଅଫିସ୍‌ର ରେଜିଷ୍ଟର ନମ୍ବର । ପ୍ରତ୍ୟେକ ବିଜ୍ଞାପନ ଯେତେବେଳେ ଛାପା ହେବାପାଇଁ ବରାଦ ଆସେ, ତାହାର ବିବରଣ ଏକ ନିର୍ଦ୍ଦିଷ୍ଟ ଖାତାରେ ଲିପିବଦ୍ଧ ହୋଇ ରହେ । ସେହି ଖାତାରେ ଯେଉଁ କ୍ରମିକ ନମ୍ବର ଥାଏ, ତାହା ଉକ୍ତ ବିଜ୍ଞାପନ ତଳେ ଦିଆ ଯାଇଥାଏ । ତାହା ହେଲେ ଆବଶ୍ୟକ ସମୟରେ ମୂଳ ଅର୍ଡର ଦେଖି ମିଳାଇବାକୁ ସୁବିଧା ହୁଏ ।

୨ । ମହେନ୍ଦ୍ରକୁମାର ସୁତାର, କନିକା ପଡ଼ା

ପ୍ର—ଉତ୍କଳପ୍ରସଙ୍ଗ ଏଜେଣ୍ଟଙ୍କ ଜରିଆରେ ବିକ୍ରି ହୁଏ କି ?

ଉ—ହଁ

୩ । ଗୌରହରି ପାତ୍ର, ତରଭା

ପ୍ର—ବର୍ତ୍ତମାନ ଯୁଗରେ ବୁଦ୍ଧି ବଡ଼ ନା ଭାଗ୍ୟ ବଡ଼ ?

ଉ—ବୁଦ୍ଧି ସବୁ ଯୁଗରେ ବଡ଼ ଥିଲା ଓ ବର୍ତ୍ତମାନ ମଧ୍ୟ ଅଛି ।

୪ । ମଧୁସୂଦନ ସାହୁ, ଯାଜପୁର

ଆପଣ ଯେଉଁ ଇନ୍‌ସର୍ଓ୍ୱାନ୍‌ସ କମ୍ପାନୀ ବିଷୟ ପଚାରିଛନ୍ତି, ତାହାର ନାମ ଆମେ ଏ ପର୍ଯ୍ୟନ୍ତ ଶୁଣିନାହୁଁ । ଅନ୍ୟାନ୍ୟ ବିବରଣୀ ନ ଦେଲେ ସେ ସମ୍ବନ୍ଧରେ କିଛି କହି ପାରିବୁ ନାହିଁ ।

୫ । ନାରାୟଣ ପାଣିଗ୍ରାହୀ, ପଦ୍ମାପୁର

ପ୍ର—ଗୋପବନ୍ଧୁଙ୍କୁ 'ଉତ୍କଳମଣି' ଆଖ୍ୟା କିଏ ଦେଇଥିଲେ ?

ଉ—ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ । ଡକ୍ଟର ପି.ସି. ରାୟ ଓ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ଆପଣ ଦୁଇଜଣ ବ୍ୟକ୍ତି ବିଚାରି ସନ୍ଦେହରେ ପଡ଼ିଛନ୍ତି । କିନ୍ତୁ ସେ ଏକ ବ୍ୟକ୍ତି ।

୬ । ଗ୍ରା. ନଂ. ୧୩୧୬, ତାଳଚେର

ପ୍ର—ତେଲୁଣୀ ପୋକ ଦେହରେ ହାତମାରିଦେଲେ ତାହା ଚକ୍ର ହୋଇ ଗୁଡ଼ାଇ ହୋଇଯାଏ କାହିଁକି ?

ଉ—ଆତ୍ମରକ୍ଷାପାଇଁ ଏହା ଏକ କୌଶଳ । କେତେକ ଜୀବ ମଧ୍ୟ ଶତ୍ରୁ ଦେଖିଲେ ଅଚଳ ହୋଇ ମଲାପରି ପଡ଼ି ରହନ୍ତି । ଗେଣ୍ଡା ତନ୍ମଧ୍ୟରୁ ଗୋଟିଏ । ତେଲୁଣୀ ପୋକ ଭାବେ 'ଶତ୍ରୁ ମୋତେ ମଲାଜୀବ ବିଚାରି ଛାଡ଼ି ଦେଇପିବ', ତେଣୁ ସେ ସେପରି ଗୁଡ଼ାଇହୋଇ ଏକ ସ୍ଥାନରେ ମଲାପରି ପଡ଼ିରହେ ।

୭ । ବ୍ରଜସୁନ୍ଦର ମହାପାତ୍ର, ପୁରୀ

ପ୍ର—ଆପଣଙ୍କ 'ପରୀକ୍ଷାପଟରେ' ଆଉ ବାହାରୁନାହିଁ କାହିଁକି ? Journalism ପଢ଼ିବାକୁ ହେଲେ କେଉଁଠାରେ ପଢ଼ିବାକୁ ହେବ ?

ଉ—ଏ ସଂଖ୍ୟାରେ 'ପରୀକ୍ଷାପଟରେ' ବିଭାଗ ଦେଖନ୍ତୁ ।

୮ । ବିମଳ ପ୍ରସାଦ ମହାନ୍ତି, ହସନପୁର ଓ ଜୟନ୍ତ କୁମାର ରଥ, ଭୁବନେଶ୍ୱର

ପ୍ର—ଡାକଟିକେଟ ସଂଗ୍ରହର ଆବଶ୍ୟକତା କଅଣ ?

ଉ—ଏହା ଅବସର ବିନୋଦନ ପାଇଁ ଏକ ନିର୍ଦ୍ଦୋଷ ଏବଂ ଶିକ୍ଷଣୀୟ କାର୍ଯ୍ୟ । ଏହାଛଡ଼ା ଟିକେଟ-ସଂଗ୍ରହ ମଧ୍ୟ ଗୋଟିଏ ଆୟର ପନ୍ଥା । ଯେଉଁ ସବୁ ଟିକେଟ କାଳକ୍ରମେ ଦୁଷ୍ପ୍ରାପ୍ୟ ହୋଇ ଆସେ, ସେଗୁଡ଼ିକ ବହୁ ମୂଲ୍ୟରେ ବିକ୍ରି ହୁଏ ।

# ଗାପ୍ପୁ ଭିଡ଼ାଓ

ଲେ—ବାପ୍ୟା

ଜୁଲାଇ ଯାଇ ଅଗଷ୍ଟ ଆସିଲା । ବହୁଦିନ ଚାଲିଥିବା ଇଣ୍ଡୋଚୀନ ଯୁଦ୍ଧର ଅବସାନ ଘଟିଛି । ସୁଏଜ ବନ୍ଦରର କଥାଟି ହୋଇଯିବା ପରି ଜଣା ପଡ଼ିଲାଣି । ବାୟୁମଣ୍ଡଳ ଟିକିଏ ଶାନ୍ତ ପଡ଼ି ଆସିବାବେଳକୁ ଭାରତରେ ଥିବା ପର୍ତ୍ତୁଗୀଜ ଅଞ୍ଚଳରେ ଅବସ୍ଥା ଗରମ ହୋଇ ଉଠୁଛି । ସେଠାରୁ ଭାରତୀୟ ଦୂତାବାସ ପରିତ୍ୟାଗ କରି ୨୪ ଘଣ୍ଟା ଭିତରେ ବାହାର ଯିବାକୁ ଭାରତୀୟ ପ୍ରତିନିଧିଙ୍କୁ ହୁକୁମ ହୋଇଛି । ଯେସାକୁ ତେସା ନୀତି ଧରି ଭାରତ ସରକାର ମଧ୍ୟ ପର୍ତ୍ତୁଗୀଜ ରାଷ୍ଟ୍ରଦୂତଙ୍କୁ ଅଗଷ୍ଟ ପହିଲା ସୁଦ୍ଧା ବମ୍ବେ ଛାଡ଼ି ଚାଲିଯିବା ପାଇଁ ନିର୍ଦ୍ଦେଶ ଦେଲେଣି । ଦେଖାଯାଉ ଏ ଲଢ଼େଇ ଭିଡ଼େଇ କୁଆଡ଼କୁ ଯାଉଛି ।

*

ଠିକ୍ ସେହିପରି ମସ୍କୋ ଓ କରାଚୀ ଭିତରେ ଟଣା-ଟଣି ଲାଗିଲାଣି । ରୁଷ ସରକାର ପାକିସ୍ଥାନର ପ୍ରତିନିଧିଙ୍କ ଉପରେ କଟକଣା ପ୍ରୟୋଗ କରିଥିବା ବାହାନା ଦେଖାଇ ପାକିସ୍ଥାନ ସରକାର ମଧ୍ୟ ରୁଷ ରାଷ୍ଟ୍ରଦୂତଙ୍କ ଉପରେ କଟକଣା ଜାରି କରି ଦେଇଛନ୍ତି ଯେ କରାଚିଠାରୁ କେବଳ ୩୫ ମାଇଲ ଭିତରେ ସେ ଚଳପ୍ରଚଳ ହୋଇପାରିବେ । ସେ ସୀମାରେଖା ଲଙ୍ଘନ କରି କୁଆଡ଼େ ଯାଇପାରିବେ ନାହିଁ । ଆମେରିକା ସଙ୍ଗେ ମେଣ୍ଟ ବାନ୍ଧୁ ବାନ୍ଧୁ—

"ଲାଗିଲାରେ ଲାବଣ୍ୟନିଧିଙ୍କ ଶ୍ୟାମ ଲଟ" ।

*

ଓଡ଼ିଶାରେ ହୁହୁଁ ହୁହୁଁ ଖୁର ଦର ବଢ଼ି ଯାଉଥିବା ଦେଖି ବାପ୍ୟା ବିବ୍ରତ ହୋଇ କାରଣ ଅନୁସନ୍ଧାନ କରିବାରୁ ଜଣାପଡ଼ିଲା ଯେ ବହୁସଂଖ୍ୟକ ଦାଢ଼ିଆ ବାବାଜି ଓ ଦାଢ଼ି ଥିବା ଲୋକ ଦାଢ଼ି କଟାଇବାରେ ଲାଗି ପଡ଼ିବାରୁ ଖୁରର ଅତ୍ୟଧିକ ଚାହିଦା ଫଳରେ ଦର ଚଢ଼ି ଯାଇଛି ।

ସେଥିପାଇଁ ଅନେକ ମନେ କରୁଛନ୍ତି କାଳିଆବୋଦା ଗଣ୍ଡଗୋଳ ଏହି ଖୁର ବ୍ୟବସାୟୀ ଓ ଖୁର ନିର୍ମାତାମାନଙ୍କର ଏକ ମିଳିତ ଚକ୍ରାନ୍ତ ।

*

ସମ୍ବାଦପତ୍ରରୁ ଜଣାଯାଏ ପାଗଳାବାବା ଜେଲରେ ପ୍ରଥମେ ମିଶ୍ରିପାଣି ଖାଇ ରହୁଥିଲେ, ବର୍ତ୍ତମାନ ମାଛ ମାଂସ ସହ ପୂର୍ଣ୍ଣ ଭୋଜନ କରୁଛନ୍ତି ।

ଯୋଗୀମାନଙ୍କ ଦୃଷ୍ଟିରେ ସବୁ ଖାଦ୍ୟ ସମାନ । ଭାଗବତରେ ପଦ ଅଛି—

'ଜୀବ ମାରିଣ ମାଂସ ଖାଇ
ସେ ଜୀବ ବୈକୁଣ୍ଠେ ବସଇ' ।

*

କାଳିଆବୋଦା ମଠ ନିର୍ମାଣ ପାଇଁ କୁଆଡ଼େ କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ନିଆଯାଇ ନାହିଁ କି କାହାକୁ ଖଜଣା ଦିଆଯାଉ ନାହିଁ ।

ଯେଉଁ ତଦନ୍ତକାରୀ ଅଫିସର ଏ ତଥ୍ୟ ଅନୁସନ୍ଧାନ କରି ପ୍ରଥମେ ଜାଣିଲେ, ତାଙ୍କର ବୁଝିବାରେ ଭ୍ରମ ହୋଇଛି । ଯେ ସ୍ୱୟଂ କଳିଯୁଗର କଳ୍କି ଅବତାର, ସେ କାହାକୁ ଖଜଣା ଦିଅନ୍ତେ ବା କାହାଠାରୁ ଅନୁମତି ନିଅନ୍ତେ ?

*

ଓଡ଼ିଶାରେ ବାବାଜୀମାନଙ୍କ ଉପରେ ଯେପରି ଚଢ଼ଉ ପଡ଼ୁଛି, ମାନ୍ଦ୍ରାଜରେ ସେହିପରି ଯୋଗୀ ଭିକାରୀଙ୍କ ଉପରେ ଚଢ଼ଉ ପଡ଼ୁଛି । ସେଠାରେ କୁଆଡ଼େ ଲାଉଡସ୍ପିକର ସାହାଯ୍ୟରେ ସରକାରଙ୍କ ତରଫରୁ ପ୍ରଚାର କରାଯାଉଛି ଯେ ଭିକାରୀମାନଙ୍କୁ କେହି କିଛି ଦିଅନ୍ତୁ ନାହିଁ ।

ଏଣିକି ବୋଧହୁଏ ଆମେରିକା ଲୋକେ ଭାରତକୁ ସାହାଯ୍ୟ ଦେବାକୁ ଆଉ ଆପତ୍ତି କରିବେ ନାହିଁ । କାରଣ ସେମାନଙ୍କର ପ୍ରଧାନ ଆପତ୍ତି ଥିଲା—'ଭାରତକୁ ସାହାଯ୍ୟ ଦେବା ବୃଥା—ଆମେ ଯେଉଁ ସାହାଯ୍ୟ ଦେଉଛୁ, ତା ଅଧିକାଂଶ ଭାଗ ସାଧୁ, ଭିକାରୀ ଓ ମାଙ୍କଡ଼ ଖାଇଯିବେ' ।

*

ଅଜମୀର କଂଗ୍ରେସ ସଭାରେ ପଣ୍ଡିତ ନେହେରୁ କଂଗ୍ରେସ ନେତା ଓ କର୍ମୀମାନଙ୍କୁ କହିଲେ ଯେ 'ବର୍ତ୍ତମାନ ଯେପରି ଘଡ଼ସଡ଼ ବେଳ ପଡ଼ୁଛି, କଂଗ୍ରେସର ଅଧିବେଶନକୁ ଆଉ ମେଳାରେ ପରିଣତ କର ନା' ।

ମେଳା କଥା ନ ହେଲେ ଆଉ ବେକଂଗ୍ରେସୀ ଲୋକ ଓ ଦେଖଣାହାରୀ କଂଗ୍ରେସ ସଭାକୁ ଯିବେ କାହିଁକି ?

## ବିଶ୍ୱାସ କର ବା ନକର

### ଅଭ୍ଭୁତ ଶକ୍ତି—

ତିରୁଚିରାପଲ୍ଲୀରେ ଗୋଟିଏ ୧୪ ବର୍ଷର ବାଳକ ୨ ମିନିଟରେ ୯୦ ବର୍ଷକୁ ସେକେଣ୍ଡରେ ପରିଣତ କରି ପାରୁଛି । ସେ କୌଣସି ସ୍କୁଲରେ ଅଧ୍ୟୟନ କରି-ନାହିଁ ।

### ଉଦ୍‌ଜାନ ବୋମାର ମାରାତ୍ମକ ଶକ୍ତି—

ଗଲ ମାର୍ଚ୍ଚ ମାସରେ ପ୍ରଶାନ୍ତ ମହାସାଗରରେ ଉଦ୍‌ଜାନ ବୋମାର ପରୀକ୍ଷାମୂଳକ ବିସ୍ଫୋରଣରେ ଆହତ କେଉଟମାନଙ୍କୁ ଠିକ୍‌ପ୍ରାପାଇଁ ୨୦ ବର୍ଷ ସମୟ ଲାଗିବ । ଏହା ପରେ ମଧ୍ୟ ସେମାନଙ୍କୁ ଡାକ୍ତରଙ୍କ ତତ୍ତ୍ୱାବଧାନରେ ରହିବାକୁ ପଡ଼ିବ ।

### ସପ୍ତାହରେ ୩୦ ହଜାର ଟଙ୍କା ଆୟ—

ପ୍ରସିଦ୍ଧ ଚଳଚିତ୍ର ଅଭିନେତା ଗ୍ରେଗରି ଗ୍ରେଗରି ପେକ୍‌ ବର୍ତ୍ତମାନ ସପ୍ତାହରେ ୨ ହଜାର ପାଉଣ୍ଡ (ପ୍ରାୟ ୩୦ ହଜାର ଟଙ୍କା) ରୋଜଗାର କରନ୍ତି ।

### ଆଶ୍ଚର୍ଯ୍ୟ ଇନ୍ଦ୍ରଧନୁ—

କାରାକୋରମ ପର୍ବତ ଆରୋହଣ କରୁଥିବା ଏକ ଅଷ୍ଟ୍ରୋ-ଜର୍ମାନ ପର୍ବତ ଆରୋହଣକାରୀ ଦଳ ୨୦୬୫୦ ଫୁଟ ଉଚ୍ଚରେ ତମ୍ବୁ ପକାଇ ଥିବାବେଳେ ଗୋଟିଏ ଆଶ୍ଚର୍ଯ୍ୟ ଇନ୍ଦ୍ରଧନୁ ଦେଖିଥିଲେ । ଏହାର ଆକାର ଖୁବ୍ ବଡ଼ । ଏହା ଏକ ବିରାଟ ମୁଦ୍ରପରି ଦେଖା ଯାଉଥିଲା । ଏହାର ମଧ୍ୟ ଭାଗରେ ଗୋଟିଏ ମନୁଷ୍ୟରୂପ ଦେଖାଯାଉଥିଲା । ଏହା ଅଳ୍ପ କେତେକ ମିନିଟ୍ ମଧ୍ୟରେ ଅନ୍ତର୍ହିତ ହୋଇ-ଗଲା । ଏହାକୁ ଦେଖିଥିବା ଲୋକଟିର ଠିକ୍ ପରଦିନ ମୃତ୍ୟୁ ହେଲା ।

### ବିଚିତ୍ର କୁକୁଡ଼ା—

ଇଂଲଣ୍ଡର ହ୍ୱାଇଟଫୋଲଡର କୁକୁଡ଼ା ପାଳନ କେନ୍ଦ୍ରରେ ଗୋଟିଏ ୪ ବର୍ଷର ମାଈ କୁକୁଡ଼ା ବାରମ୍ବାର ରଙ୍ଗ ପରିବର୍ତ୍ତନ କରୁଛି । ଏହା ପ୍ରଥମେ ସଫା ଧଳାରଙ୍ଗ-ବିଶିଷ୍ଟ ଥିଲା । ଦୁଇ ବର୍ଷପରେ ଚିକ୍‌କଣ କଳା ରଙ୍ଗକୁ ପରିବର୍ତ୍ତିତ ହେଲା । ବର୍ତ୍ତମାନ ପୁଣି ରଙ୍ଗ ପରିବର୍ତ୍ତନ କରୁଛି ।

### ଅଦ୍ଭୁତ ନରମେଧ—

ପଶ୍ଚିମ ଚୀନର ଶାସନକର୍ତ୍ତା ଚ୍ୟାଙ୍ଗ-ସିଏନ୍-ଚୁଙ୍ଗ ତାଙ୍କ ରାଜତ୍ୱର (୧୬୪୩-୧୬୪୮) ୫ ବର୍ଷ ମଧ୍ୟରେ ପ୍ରାୟ ୪ କୋଟି ଲୋକଙ୍କୁ ହତ୍ୟା କରାଇଥିଲେ । ଏମାନଙ୍କ ମଧ୍ୟରେ ୩୨,୩୧୦ ଛାତ୍ର, ୨୦୦୦ ସୈନ୍ୟ, ୩୦୦୦ ରାଣୀନଅର ପରିଚାରିକା, ୨୭୦୦୦ ବୌଦ୍ଧ ସନ୍ନ୍ୟାସୀ, ରାଜଧାନୀ ଚେଙ୍ଗ୍‌ଟୁ ସହରର ୬ ଲକ୍ଷ ଅଧିବାସୀ, ତାଙ୍କ ନିଜ ସ୍ତ୍ରୀଙ୍କ ମଧ୍ୟରୁ ୨୮୦ ଜଣ ଏବଂ ତାଙ୍କ ସୈନ୍ୟଙ୍କ ସ୍ତ୍ରୀ, କନ୍ୟା ଓ ଭଉଣୀ ଆଦି ୪ ଲକ୍ଷ ଜଣ ଥିଲେ— ଏଥିରେ ତୃପ୍ତ ନ ହୋଇ ସେ ଜେଚୁଆନ୍ ପ୍ରଦେଶର ୩ କୋଟି ୮୦ ଲକ୍ଷ ଅଧିବାସୀଙ୍କୁ ଏକା ହୁକୁମରେ ହତ୍ୟା କରାଇଲେ ।



### ତିନି ମିନିଟରେ ଗୋଟିଏ ଟେଲିଫୋନ—

ଭାରତରେ ବ୍ୟବହୃତ ହେଉଥିବା ଟେଲିଫୋନ ମଧ୍ୟରୁ ଶତକଡ଼ା ୯୯ ଟି ଭାରତର ବାଙ୍ଗାଲୋରସ୍ଥ ଇଣ୍ଡିଆନ୍ ଟେଲିଫୋନ୍ ଇଣ୍ଡଷ୍ଟ୍ରିଜ୍ ଦ୍ୱାରା ପ୍ରସ୍ତୁତ ହେଉଛି । ଏଠାରେ ପ୍ରତି ୩ ମିନିଟରେ ଗୋଟିଏ ଟେଲିଫୋନ ତିଆରି ହେଉଛି । ବର୍ତ୍ତମାନ ଏଠାରେ ବାର୍ଷିକ ୪୦ ହଜାର ଟେଲିଫୋନ ଯନ୍ତ୍ର ତିଆରି ହେଉଛି । ଏହି ଟେଲିଫୋନକୁ ନୂଆ ପ୍ରଣାଳୀରେ ୧ ମିନିଟକୁ ଗୋଟିଏ ଲେଖାଏଁ ତିଆରି କରିବାର ଯୋଗାଡ଼ ହେଉଛି ।

ଏହା ଦ୍ୱାରା ଉତ୍ପାଦନ ୪୦ ହଜାରରୁ ୬୦ ହଜାରକୁ ବୃଦ୍ଧି ପାଇବ ।

ଏତେ ବଡ଼ ଅନୁଷ୍ଠାନରେ କାର୍ଯ୍ୟ କରୁଥିବା ଲୋକ ମଧ୍ୟ ଅଧିକ ନୁହନ୍ତି । ୯୦୦ ଟି ମେସିନରେ ୨୫୮୦ ଜଣ ମାତ୍ର କାମ କରନ୍ତି ।

ଗୋଟିଏ ଟେଲିଫୋନ ଯନ୍ତ୍ରରେ ମୋଟରେ ୩୬୩ଟି ଅଂଶ ( parts ) ଅଛି । ( ୩୧ ପୃଷ୍ଠା ଦେଖ )



## ଓଡ଼ିଶା ଖବର

ତା ୩ । ୭—ଦେଶର ଘରୋଇ ମନ୍ତ୍ରୀ ଡକ୍ଟର କୈଳାସ ନାଥ କାଟଜୁଙ୍କ ଦ୍ୱାରା ପୁରୀରେ ଗାନ୍ଧିସ୍ମୃତି ଉଦ୍ୟାନର ଭିତ୍ତି ସ୍ଥାପିତ ହେଲା ।

ତା ୧୪— ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ରେଭେନ୍‌ସା କଲେଜରେ ଭୂତତ୍ତ୍ୱ ଶ୍ରେଣୀ ଖୋଲାଗଲା ।

—ଆଜି କଟକରେ ଆନ୍ତର୍ଜିଲ୍ଲା ଫୁଟବଲ୍ ଖେଳ ପ୍ରତିଯୋଗିତା ଆରମ୍ଭ ହେଲା ।

ତା ୨୦—କେନ୍ଦ୍ରାପଡ଼ା ଉପନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଅଧିକ ଭୋଟ ପାଇ ନିର୍ବାଚିତ ହେଲେ ।

୨୬—ଉତ୍କଳ ସଙ୍ଗୀତ ନୃତ୍ୟ ନାଟ୍ୟକଳା ପରିଷଦ ସାଧାରଣ କାଉନ୍‌ସିଲ୍ ୨୪ ଜଣ ସଭ୍ୟଙ୍କୁ ନେଇ ଗଠିତ ହେଲା । ଏମାନଙ୍କ ମଧ୍ୟରୁ ୭ଜଣ ସରକାରଙ୍କ ଦ୍ୱାରା ମନୋନୀତ ଏବଂ ଅନ୍ୟ ୧୭ ଜଣ ଓଡ଼ିଶାର ବିଶିଷ୍ଟ ସଙ୍ଗୀତକଳାବିତ୍ ଓ ବିଭିନ୍ନ ସଙ୍ଗୀତ ଅନୁଷ୍ଠାନ ପକ୍ଷରୁ ମନୋନୀତ ସଭ୍ୟ ।

ତା ୩୦—ଆସନ୍ତା ଜାନୁୟାରୀ ମାସରେ ବିନୋବା-ବାଭେ ଓଡ଼ିଶା ଗସ୍ତରେ ଆସିବେ ବୋଲି ଜଣାଯାଉଛି ।

## ଭାରତ ଖବର

ତା ୩ । ୭—ଭାରତ ପାର୍ଲିମେଣ୍ଟ ଉଭୟ ସଭାର ଗ୍ରୀଷ୍ମକାଳୀନ ବୈଠକ ବାଙ୍ଗାଲୋରଠାରେ ବସିବାର ପ୍ରସ୍ତାବ ଅଛି ।

ତା ୮—ପୃଥିବୀର ଦୀର୍ଘତମ ଭକ୍ରା-ନାଙ୍ଗଲ କେନାଲ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନେହେରୁଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା ।

ତା ୧୦—ଧାନ ଚାଉଳ ଉପରୁ ନିୟନ୍ତ୍ରଣ ଉଠିଲା । ଏ ଆଦେଶ ସବୁ ପ୍ରଦେଶରେ ଲାଗୁ ହେବ ଏବଂ ପ୍ରାଦେଶିକ ସରକାରମାନେ ଖାଦ୍ୟଦ୍ରବ୍ୟ ଉପରେ କଟକଣା ରଖିବେ ନାହିଁ ।

ତା ୧୫— କାଶ୍ମୀର ସଦର-ଇ-ରିୟାସତ ଯୁବରାଜ କରଣ ସିଂଙ୍କ ଦ୍ୱାରା ପ୍ରାଦେଶିକ କୃଷିମନ୍ତ୍ରୀ ସମ୍ମିଳନୀ ଉଦ୍‌ଘାଟିତ ହେଲା ।

ତା ୧୬—ଫରାସୀ ଶାସିତ ମାହେର ଶାସନଭାର ଜନସାଧାରଣଙ୍କ ପ୍ରତିନିଧି ମହାଜନ ସଭା ହସ୍ତରେ ଅର୍ପିତ ହେଲା ।

ତା ୨୫—ଇଣ୍ଡୋଚୀନ ଯୁଦ୍ଧବନ୍ଦ କମିଶନର ପ୍ରଥମ ବୈଠକ ଅଗଷ୍ଟ ପହିଲାରେ ଦିଲ୍ଲୀଠାରେ ବସିବ ।

—"ଅଲ ଇଣ୍ଡିଆ କଂଗ୍ରେସ କାର୍ଯ୍ୟକାରୀ କମିଟି"ର ବୈଠକ ଆଜମୀରଠାରେ ଆରମ୍ଭ ହେଲା ।

## ବିଦେଶ ଖବର

ତା ୨୭—ଉତ୍ତର ବର୍ମାରେ କୋମିଂଟାଙ୍ଗ ସୈନ୍ୟ ଆକ୍ରମଣ କରି ଶାନ ରାଜ୍ୟର ଗୋଟିଏ ସହର ଦଖଲ୍ କଲେ ।

ତା ୩—ଗୁଆଟେମଲର ପୂର୍ବତନ ପ୍ରେସିଡେଣ୍ଟ ତାଙ୍କର ପଦତ୍ୟାଗ ପରେ ମେକ୍‌ସିକୋସ୍ଥ ଗୁଆଟେମଲ ଦୂତାବାସରେ ଆତ୍ମହତ୍ୟା କଲେ ।

ତା ୬—କର୍ଣ୍ଣେଲ ଲୁଇସ୍ ମନ୍‌ଜନ ଗୁଆଟେମଲର ନୂଆ ପ୍ରେସିଡେଣ୍ଟ ନିଯୁକ୍ତ ହେଲେ ଏବଂ ସେଠାରେ ନୂଆ ସରକାର ପ୍ରତିଷ୍ଠା କରାଗଲା ।

ତା ୨୦—ଦୀର୍ଘ ଆଠବର୍ଷ ରକ୍ତାକ୍ତ ଯୁଦ୍ଧ ପରେ ଇଣ୍ଡୋଚୀନରେ ଶାନ୍ତି-ଚୁକ୍ତି ସ୍ୱାକ୍ଷରିତ ହେଲା । ଯୁଦ୍ଧବନ୍ଦ ତତ୍ତ୍ୱାବଧାରକ କମିଶନରେ ପୋଲଣ୍ଡ, କାନାଡ଼ା ଓ ଭାରତ ରହିଲେ । ଭାରତ ଉକ୍ତ କମିଶନ୍‌ର ଚେୟାରମ୍ୟାନ ରୂପେ ସାମରିକ ଓ ରାଜନୈତିକ ଦାୟିତ୍ୱ ବହନ କଲା ।

ତା ୨୧—ସାତବର୍ଷ ଧରି ଲାଗି ରହିଥିବା ଇଣ୍ଡୋ-ଚାଇନା ଯୁଦ୍ଧବନ୍ଦ ଚୁକ୍ତି ସ୍ୱାକ୍ଷରିତ ହେଲା ।

ତା ୨୮—ଗତ ବହୁବର୍ଷ ଧରି ଇଂଲଣ୍ଡ ଓ ସୁଏଜ କେନାଲ ମଧ୍ୟରେ ରହିଥିବା ବିବାଦ ସମାଧାନ ହେଲା ।

ତା ୩୧—ଅଗଷ୍ଟ ପହିଲାରେ ଦିଲ୍ଲୀଠାରେ ବସୁଥିବା ଇଣ୍ଡୋଚୀନ ସନ୍ଧି କମିଶନ ବୈଠକରେ ସଭ୍ୟ ଥିବା ଦେଶମାନଙ୍କ ବ୍ୟତୀତ ଫ୍ରାନ୍ସ, ଭିଏଟ୍‌ନାମ, ଲାଓସ୍, କାମ୍ବୋଡିଆ ଓ ଭିଏଟ୍‌ମିନ ପ୍ରଭୃତି ଯୁଦ୍ଧରତ ଦେଶମାନେ ଯୋଗ ଦେବେ। ଏତଦ୍‌ବ୍ୟତୀତ ବାହାର ଦେଶମାନଙ୍କରୁ ୨୨ ଜଣ ପ୍ରତିନିଧି ଯୋଗ ଦେବେ।

—୦—

# ବିଜ୍ଞାନବାର୍ତ୍ତା

## ବିନା କାର୍ବନରେ ନକଲ—

କୌଣସି ଲେଖାର ଏକାଧିକ ନକଲ ଆବଶ୍ୟକ ହେଲେ କାର୍ବନ କାଗଜ ସାହାଯ୍ୟରେ କରାଯାଏ। ବର୍ତ୍ତମାନ ଏକ ନୂତନ ପ୍ରଣାଳୀ ଆବିଷ୍କୃତ ହୋଇଛି, ଯାହାଦ୍ୱାରା କାର୍ବନର ବିନା ସାହାଯ୍ୟରେ ୬।୭ କପି ନକଲ କରାଯାଇ ପାରିବ। ନୂତନ ପ୍ରଣାଳୀଟି ଏହିପରି। ଉପର କାଗଜ ତଳେ ଏକ ବର୍ଣ୍ଣହୀନ ପ୍ରଲେପ ଦିଆଯାଇଥିବ। ତଳ କାଗଜ ଉପରେ ସେହିପରି ଆଉ ଏକ ଅଠାଳିଆ ଲେପ ଥିବ। ପେନ୍‌ସିଲ ବା ଟାଇପରାଇଟର ସାହାଯ୍ୟରେ ଉପର କାଗଜରେ ଲେଖିଲେ ଚାପ ପାଇ ଦୁଇ କାଗଜର ଲେପ ମଧ୍ୟରେ ରାସାୟନିକ ପ୍ରକ୍ରିୟା ସଂଘଟିତ ହେବ ଏବଂ ଫଳରେ ନୀଳବର୍ଣ୍ଣର ଦାଗ ତଳ କାଗଜରେ ଫୁଟି ଉଠିବ।

## ଉତ୍ତର ମେରୁ ସାଗରରେ ବିଜ୍ଞାନ ଗବେଷଣା

ବର୍ତ୍ତମାନ ରୁଷିଆର ଦୁଇ ଦଳ ବୈଜ୍ଞାନିକ ଉତ୍ତର ମେରୁ ସାଗରରେ ଭାସମାନ ତୁଷାର ଖଣ୍ଡ ଉପରେ ଗୃହ ନିର୍ମାଣ କରି ସେଠାରେ ରହି ବୈଜ୍ଞାନିକ ଗବେଷଣା ଚଳାଉ ଅଛନ୍ତି। ଗ୍ରୀଷ୍ମ ସମୟ ଯୋଗୁ ସେମାନଙ୍କୁ ବିଶେଷ ଅସୁବିଧା ହେଉଛି। ବରଫ ଖଣ୍ଡମାନ ତରଳି ସେମାନଙ୍କ ବିଜ୍ଞାନ ଗବେଷଣାଗାରର ଚତୁର୍ଦ୍ଦିଗରେ କ୍ଷୁଦ୍ର ଜଳାଶୟମାନ ସୃଷ୍ଟି କରୁଛି ଏବଂ ତୁଷାରଖଣ୍ଡ ଘନ କୁହୁଡି ଦ୍ୱାରା ଆଚ୍ଛାଦିତ ହୋଇଅଛି।

ଆଉ ମଧ୍ୟ ଜଣାଯାଇଛି ଗଲା ବସନ୍ତ ଋତୁ ଆରମ୍ଭରୁ କେତେକ ଭୌଗୋଳିକ ଓ ସମୁଦ୍ରତତ୍ତ୍ୱବିତ୍ ଉତ୍ତର ମେରୁ ସାଗରରେ ଭାସମାନ ଭେଳା ଉପରେ ରହି ସମୁଦ୍ର ସମ୍ପର୍କରେ ସବିଶେଷ ତଥ୍ୟ ସଂଗ୍ରହ କରୁଛନ୍ତି। ବୈଜ୍ଞାନିକମାନେ ସମସ୍ତେ ଭଲ ଥିବାର ସମ୍ବାଦ ମିଳିଛି। ଏମାନଙ୍କୁ ପ୍ରତିଦିନ ହେଲିକପ୍‌ଟର ସାହାଯ୍ୟରେ ସମ୍ବାଦପତ୍ର ଯୋଗାଇ ଦିଆଯାଉଛି ଏବଂ ସେମାନଙ୍କ ସହ ବେତାର ସମ୍ପର୍କ ରଖାଯାଇଛି। ଏମାନେ ସମୁଦ୍ର ସମ୍ବନ୍ଧରେ ଗବେଷଣା କରି ଉତ୍ତର ସାଗରରେ ଜାହାଜ ଚଳାଚଳ ପାଇଁ ଚେଷ୍ଟା କରୁଛନ୍ତି। ଗୋଟିଏ ଦଳର କମାଣ୍ଡର ପ୍ରଫେସର ଟି.ଆଇ.ଟଲ୍‌ଷ୍ଟିକୋଭ୍ କହିଛନ୍ତି, "ଗ୍ରୀଷ୍ମଋତୁ ଆମକୁ ବହୁ ଅସୁବିଧାରେ ପକାଉଅଛି। ବରଫ ତରଳିବାର ଆଶଙ୍କା ହେଉଛି ଏବଂ ତୁଷାରଖଣ୍ଡଗୁଡ଼ିକ ବର୍ତ୍ତମାନ ବର୍ଷା, ପବନ ଓ କୁହୁଡିଦ୍ୱାରା ଆକ୍ରାନ୍ତ ହେବାରୁ ଆମର ବହୁ ସମୟ ନଷ୍ଟ ହେଉଛି। ଆଉ ମଧ୍ୟ ତୁଷାରଖଣ୍ଡର ଅବିରାମ ସ୍ଥାନ ପରିବର୍ତ୍ତନ ଯୋଗୁଁ କାର୍ଯ୍ୟରେ ବହୁ ବ୍ୟାଘାତ ଜନ୍ମୁଛି।"

ବର୍ତ୍ତମାନ ସେ ସ୍ଥାନରଂ ଉତ୍ତାପ ୧ ବା ୨ ଡିଗ୍ରୀ ସେଣ୍ଟିଗ୍ରେଡ୍।

—୦—

# ଖଟି ମଜ୍ଜ୍ୟାକ

ସନ୍ତସନ୍ତିଆ ଖାଲ ଜାଗାରେ ରାସ୍ତା ତିଆରି କରିବାକୁ ହେବ। ଇଂଜିନିଅର ସାହେବ ଓଭରସିଅରଙ୍କୁ ଡାକି କହିଲେ "୧୫ ଜଣ ଲୋକ ନେଇ ଶୀଘ୍ର କାମ ଶେଷକର।"

ଅଳ୍ପ ସମୟ ପରେ ଓଭରସିଅର ଫେରିଆସି କହିଲେ, "ସାର୍, ଲୋକଗୁଡ଼ାକ କାଦୁଅରେ ଗଳି ପଡ଼ୁଛନ୍ତି। ପୁରୁଷେ ଲେଖାଏଁ କାଦୁଅ। କାମ କିପରି ହେବ ?"

ଇଂଜିନିଅର ଗର୍ଜିଉଠିଲେ—"ନନ୍‌ସେନସ୍, ଯାହା ଯାହା ଦରକାର, ଖଣ୍ଡେ କାଗଜରେ ଲେଖି ଜଣାଅ। ସବୁ ତୁମକୁ ଯୋଗାଇ ଦିଆଯିବ।"

କିଛି ସମୟ ପରେ ଓଭରସିଅର ଲେଖି ଜଣାଇଲେ—"୧୫ ଫୁଟ କାଦୁଅପୂର୍ଣ୍ଣ ଖାଲକୁ ପାରିହେବାପାଇଁ ୧୮ ଫୁଟ ଉଚ ପନ୍ଦରଜଣ ଲୋକ ଆବଶ୍ୟକ।"

—୦—



## ହିସାବ-ପତ୍ରିକା

୧ । ୧୯୫୨ ହିସାବରୁ ଜଣାଯାଇଛି ଯେ, ବିଭିନ୍ନ ଦେଶରେ ପ୍ରକାଶ ହେଉଥିବା ଦୈନିକ ସମ୍ବାଦ ପତ୍ରର ସଂଖ୍ୟା ନିମ୍ନରେ ଦିଆଗଲା ।

( ପ୍ରତି ୧ ହଜାର ଲୋକ ପିଛା )

| | | | |
|---|---|---|---|
| ଇଂଲଣ୍ଡ | ୬୧୫ | ଆଫଗାନସ୍ଥାନ | ୧ |
| ସୁଇଡେନ | ୪୯୦ | ପାକିସ୍ଥାନ ଓ ଅନ୍ୟାନ୍ୟ ଅଫ୍ରିକାର ଦେଶ | ୨ — ୩ |
| ଯୁକ୍ତରାଷ୍ଟ୍ର (ଆ) | ୩୫୩ | ଥାଇଲଣ୍ଡ | ୪ |
| ଅଷ୍ଟ୍ରେଲିଆ | ୪୧୬ | ବର୍ମା ଓ ଭାରତ | ୮ |

୨ । ପୃଥିବୀର ମୋଟ ପିଲା ସଂଖ୍ୟା ୫୫ କୋଟି ମଧ୍ୟରୁ ପ୍ରାୟ ଅଧିକରୁ ଅଧିକ ଶିକ୍ଷା ପାଆନ୍ତି ନାହିଁ ।

୩ । ପଶ୍ଚିମ ବଙ୍ଗରେ ହୋଇଥିବା ଗତ ସ୍କୁଲ ଫାଇନାଲ ପରୀକ୍ଷାରେ ୫୫୭୭୧ରୁ ୩୧୯୨୪ ପାସ୍ କରିଅଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ ଯଥାକ୍ରମେ ୧୬୮୫ ଓ ୬୫୮୩ ଜଣ ପାସ କରିଛନ୍ତି । ଶତକଡ଼ା ପାସ୍ ସଂଖ୍ୟା ୫୭.୨୪ ।

୪ । ୧୯୫୧ ମସିହା ଜନଗଣନାରୁ ଜଣାଯାଇଛି ଯେ ୧୯୪୧ ମସିହା ଜନଗଣନା ତୁଳନାରେ ଛୋଟପିଲା (୪ ବର୍ଷ ପର୍ଯ୍ୟନ୍ତ)ଙ୍କ ସଂଖ୍ୟା ଶତକଡ଼ା ୧୩.୬ ସ୍ଥଳେ ୧୩.୩, ବାଳକ ଓ ବାଳିକା (୫ ବର୍ଷରୁ ୧୪ ବର୍ଷ)ଙ୍କ ସଂଖ୍ୟା ୨୪.୭ ସ୍ଥାନରେ ୨୪.୨, ୧୫ ବର୍ଷରୁ ୩୪ ଏବଂ ୩୫ରୁ ୫୪ ପର୍ଯ୍ୟନ୍ତ ସ୍ତ୍ରୀ ପୁରୁଷଙ୍କ ଅନୁପାତ ପ୍ରାୟ ସମାନ ଅର୍ଥାତ୍ ୩୪.୩ ଏବଂ ୧୯.୮ । ୫୫ ବର୍ଷରୁ ଅଧିକ ଲୋକଙ୍କ ସଂଖ୍ୟା ୧୯୪୧ରେ ୭.୬ ଥିବାସ୍ଥଳେ ବର୍ତ୍ତମାନ ୮.୫ ।

ଉପରଲିଖିତ ଶତକଡ଼ା ହିସାବରୁ ପୁରୁଷ ସଂଖ୍ୟା ସ୍ତ୍ରୀ ଅପେକ୍ଷା ଅଧିକ । ବାଳକ ବାଳିକା ସଂଖ୍ୟା ୨୪.୨ରୁ ବାଳକ ୧୨.୪ ଓ ବାଳିକା ୧୧.୮ । ଯୁବକ ଯୁବତୀ ୩୪.୩ରୁ ଯୁବକ ୧୭.୬ ଓ ଯୁବତୀ ୧୬.୭ । ପ୍ରୌଢ଼ ୧୯.୭ରୁ ପୁରୁଷ ୧୦.୪ ଓ ସ୍ତ୍ରୀ ୯.୩ ।

୫ । ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ବର୍ଷକୁ ହାରାହାରି ୩ କୋଟି ହିସାବରେ ବୃଦ୍ଧି ପାଉଛି । ଗତ ଶହେବର୍ଷ ମଧ୍ୟରେ ପୃଥିବୀର ଲୋକ ସଂଖ୍ୟା ଦ୍ୱିଗୁଣରୁ ଅଧିକ ହୋଇଛି । ୧୮୫୦ ରେ ମୋଟ ଲୋକସଂଖ୍ୟା ୧୧୬ କୋଟି ଥିବା ସ୍ଥଳେ ବର୍ତ୍ତମାନ ୨୫୦ କୋଟି ହୋଇଛି । ୩ ଶହ ବର୍ଷ ପୂର୍ବେ ପୃଥିବୀର ମୋଟ ଲୋକସଂଖ୍ୟା ପ୍ରାୟ ୫୦ କୋଟି ଥିଲା । ଗତ ଶତାବ୍ଦୀ ମଧ୍ୟରେ ୟୁରୋପର ଲୋକ ସଂଖ୍ୟା ଦ୍ୱିଗୁଣିତ, ରୁଷିଆର ଚତୁର୍ଗୁଣିତ ଓ ଉତ୍ତର ଆମେରିକାର ଷଡ଼ଗୁଣ ହୋଇଅଛି ।

୬ । ବମ୍ବେରେ ଦୈନିକ ୫୫ ଲକ୍ଷ ସିଗାରେଟ ଖର୍ଚ୍ଚ ହୁଏ । କେବଳ ସିଗାରେଟ୍ ପାଇଁ ବମ୍ବେ ଦୈନିକ ୪ ଲକ୍ଷ ଟଙ୍କା ଖର୍ଚ୍ଚ କରେ । ଏହା ବ୍ୟତୀତ ୭୨ ଲକ୍ଷ ବିଡ଼ି ଖର୍ଚ୍ଚ ହୁଏ । ଏହାର ମୂଲ୍ୟ ପ୍ରାୟ ୨୦ ହଜାର ଟଙ୍କା । ଧୂଆଁପତ୍ର ଓ ନାସରେ ବମ୍ବେରେ ଯଥାକ୍ରମେ ୨୦ ହଜାର ଓ ୧୫ହଜାର ଟଙ୍କା ଖର୍ଚ୍ଚ ହୁଏ ।

—o—

## ଶିକ୍ଷା ପ୍ରଚାର

### Journalism

ଭାରତରେ ଦିନକୁ ଦିନ ପତ୍ରପତ୍ରିକାର ପ୍ରସାର ବୃଦ୍ଧିରୁ ସୁଯୋଗ୍ୟ ସାମ୍ବାଦିକମାନଙ୍କର ଚାହିଦା ବଢ଼ୁଛି ଓ ବଢ଼ିବ । ବର୍ତ୍ତମାନ ପାଇଁ ନିମ୍ନଲିଖିତ ଅନୁଷ୍ଠାନମାନଙ୍କରେ **Journalism** ଶିକ୍ଷାର ବ୍ୟବସ୍ଥା ଅଛି ।

୧) ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ – ମାନ୍ଦ୍ରାଜ । ଶିକ୍ଷାକାଳ ଏକବର୍ଷ । ଜାନୁଆରୀରୁ ପାଠ ଆରମ୍ଭ କରିବାକୁ ହୁଏ । ଫିସ୍ ଟ ୨୦୯ ।

୨) ନୂଆଦିଲ୍ଲୀରେ ମଧ୍ୟ ଡିପ୍ଲୋମା କୋର୍ସ ପାଇଁ ଏକ ଅନୁଷ୍ଠାନ ଅଛି । ଗ୍ରାଜୁଏଟ୍ ଓ ପୋଷ୍ଟ ଗ୍ରାଜୁଏଟମାନଙ୍କୁ ଏକବର୍ଷ ପଢ଼ିବାକୁ ହୁଏ ।

୩) ନାଗପୁର ବିଶ୍ୱବିଦ୍ୟାଳୟ— ନାଗପୁର ହିସ୍ଲପ୍ କଲେଜରେ ଅଳ୍ପଦିନ ହେଲା ଗୋଟିଏ ଶିକ୍ଷାକେନ୍ଦ୍ର ଖୋଲା ଯାଇଅଛି ।

Printed & Published by Sri R. K. Nanda B. A. D. Ed. at the Parijat Press, Telengabazar, Cuttack-1—1954.

Regd. No. O-57

"SANSAR"

(The only Magazine on General Knowledge)









ବାର୍ଷିକ ମୂଲ୍ୟ—ଟ ୩୦୯ ଅଗ୍ରୀମ ଦେୟ

ପ୍ରତିଖଣ୍ଡ- ୮୦ ଅଣା